୰ ଜଗନ୍ନାଥ ଦାସଙ୍କ କୃତ

ଶ୍ରୀମଦ୍ଭାଗବତ

# ପଞ୍ଚମ ସ୍କନ୍ଧ

ଦ୍ୱିତୀୟ ସଂସ୍କରଣ



ପ୍ରକାଶକ :—
ପଣ୍ଡିତ ଶ୍ରୀ ଅଭୁଲ ମିଶ୍ର କାବ୍ୟତୀର୍ଥ
ଉଟକ ଟ୍ରେଡ଼ିଂ କୋମ୍ପାନୀ
ବାଲୁବଜାର କଟକ

ମୂଲ୍ୟ ଛଅଅଣା ମାତ୍ର



## ଶ୍ରୀମଦ୍ଭାଗବତ ।

# ପଞ୍ଚମସ୍କନ୍ଧ ।

## ପ୍ରଥମ ଅଧ୍ୟାୟ ।

ନାରାୟଣଂ ନମସ୍କୃତ୍ୟ ନରଞ୍ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁମ୍ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ॥

ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତଦ୍ରବସଂଯୁତଂ
ପିବତ ଭାଗବତ ରସମାଳୟଂ ମୁହୁରହୋ ରସିକାଭୁବିଭାବୁକା ॥

ପରମ ପୁରୁଷ ଗୋବିନ୍ଦ । ତାହାଙ୍କ ଚରଣାରବିନ୍ଦ ॥
ତହିଁ ଗଳଇ ମକରନ୍ଦେ । ତାହା ଯେ ପିବନ୍ତି ଆନନ୍ଦେ ॥
ତାହାଙ୍କ ଚରଣ ବନ୍ଦଇ । ପଞ୍ଚମସ୍କନ୍ଧ ଗୀତ ଗାଇ ॥

ପରୀକ୍ଷିଦୁବାଚ ।

ହେ ମୁନି କିପାଁ ପ୍ରିୟବ୍ରତ । ସେ ଅତ୍ମାରାମ ଭାଗବତ ॥
ଗୃହେ ରମିଲା ତାଙ୍କ ମନ । ପ୍ରାରବ୍ଧ କର୍ମରେ ବନ୍ଧନ ॥
ନଷ୍ଟନ୍ତି ମୁକ୍ତସଙ୍ଗ ଯେନ୍ତୁ । ଏମନ୍ତ ପ୍ରାଣୀମାନେ କେନ୍ତୁ ॥
କିପାଁ ଏ ଗୃହେ ମନ ବହେ । ହେ ମୁନି ଫେଡ଼ିବା ସଂଶୟେ ॥
ନିଶ୍ଚେ ମହତ ଲୋକଙ୍କର । ଉତ୍ତମଶ୍ଳୋକ ଯେ ବା ସାର ॥
ନିବୃତ୍ତିରତ ଯେ ହୁଅଇ । ସେ କିପାଁ ବ୍ୟର୍ଥ ଆଚରଇ ॥

ଏ ମୋତେ ଯଶସ୍କ ବହୁତ । ଯେ ପ୍ରାଣୀ ଶୁଣେ ମୋହେ ତତ୍ତ୍ୱ ।
ତା ମତ ତପ୍ତ ବିଷଯୁରେ । ଚୋଉରଲ୍ଷ ଭ୍ରମନ୍ତ ସଂସାରେ ।
ନିଷ୍ଟୁକ୍ କହିବା ତୁ ଶୁଣ । ଧନ୍ୟ ତୋ ଜୀବନ ସୁଜନ ।୧୨।
ଉତ୍ତମ ଶ୍ଳୋକ ଯେ ଗୋବିନ୍ଦ । ତାହାଙ୍କ ଚରଣାରବିନ୍ଦ ॥
ତର୍ହି ଅମିୟୁ ରସ ବହେ । ତହୁଁ ଯେ ପ୍ରାଣୀ ନିତ୍ୟ ପିଏ ॥
ଭକତ ହୋଇ ସେହୁ ଜନ । ପରମହଂସ ଧିବଣ୍ଡୀନ ॥
ତାହାର ବିଷ୍ଣୁକଥା ଶୁଣେ । କେବେହେଁ ମନ ନୋହେ ଆନେ ॥
ଅନ୍ୟ ଯେ ଗୁଣ କଥାମାନ । ଇଚ୍ଛା ନ କରଇ ସେ ଜନ ॥
ଯେଣୁ ସେ ନୃପ ପ୍ରିୟବ୍ରତ । ଗୁଣରେ ହୋଇଲା ପୂଜିତ ॥
ମୁନି ପରମ ଭାଗବତ । ନାରଦ ଲୋକରେ ବିଖ୍ୟାତ ॥
ସେ ମୁନି ଚରଣ ସେବାରେ । ସର୍ବକଳୁଷ ଗଲା ଦୂରେ ।୨୦।
ତକ୍ଷଣେ ସତ୍ତ୍ୱଗୁଣ ବଢ଼ି । ବ୍ରହ୍ମ ଯଜ୍ଞରେ ଦୀକ୍ଷା ପାଇ ॥
ପିତାର ଆଜ୍ଞା ପାଳିକରି । ଅବନୀ ପାଳନେ ତତ୍ପର ॥
ଉତ୍ତମ ହୋଇ ଗୁଣ ତାର । ପ୍ରଜାପାଳନେ ନୃପବର ॥
ଅଖିଳ ଲୋକଙ୍କ ଜୀବନ । ଅନାଦି ନାଥ ନାରାୟଣ ॥
ତାହାଙ୍କ ଚରଣାରବିନ୍ଦେ । ଚିତ୍ତ ନିବେଶି ଅପ୍ରମାଦେ ॥
ପ୍ରବର୍ତ୍ତି ସଂସାର ବେଭାରେ । ମନକୁ ରଖି ନ ଥିବ ଦୂରେ ॥
ଜୀବ ଲୋକର ପରାଭବ । ସହିଲା ଆପଣା ସ୍ୱଭାବ ॥
ଏଥୁଅନ୍ତରେ ଭଗବାନ । ଦେବଙ୍କ ଅଧି ଯେ କାରଣ ॥
ସ୍ୱଜାତି ଗୁଣମାନ ଘେନି । ଜନଗ୍ରୁପ ଯେ ଅମୃଯୋନି ॥
ନିଗମ ନିଜ ଗୁଣେ ଥୋଇ । ଭୁବନୁ ଅଇଲେ ଗୋସାଇଁ ।୩୦।
ଗଗନମଧ୍ୟେ ଚନ୍ଦ୍ର ଯେସନ୍ତେ । ବିରାଜମାନ ତାରଗଣେ ॥
ଅପୂର୍ବ ଶୋଭାକୁ ବିସ୍ତାରି । ବିଜୟେ ପ୍ରଭୁ ନଚ୍ଛର ॥
ନିର୍ମଳ ପୂଜା ଉପହାରେ । ପୂଜିଲେ ତାଙ୍କୁ ବେଦବରେ ॥
ପଥରେ ଯୂଥ ଯୂଥ ହୋଇ । ସିଦ୍ଧ ଗନ୍ଧର୍ବ ଗୀତ ଗାଇ ॥
ଶ୍ରବଣ ମୁନିଙ୍କ ସହିତେ । ଗାୟନ କଲେ ଯେ ସମସ୍ତେ ॥
ଗନ୍ଧମାଦନଗିରିତଳେ । ସଭା କରାଇ ବିଜେ କଲେ ॥
ବୃଷବାହନେ ପଞ୍ଚାନନ । ହରିଣ୍ୟଗର୍ଭ ଜନାର୍ଦ୍ଦନ ॥

ସେଠାରେ ଥାଇଣ ନାରଦ । ବନ୍ଦିଲେ ପିତାଙ୍କର ପାଦ ॥
ତକ୍ଷଣେ ଉଠି ମୁନିବର । ସାନନ୍ଦେ ଯୋଡ଼ି ବେନି କର ॥
ପିତାମହଙ୍କୁ ସେ ବନ୍ଦିଲେ । ଚରଣେ ଶିର ଲଗାଇଲେ ।୪୦।
ପ୍ରିୟବ୍ରତର ପୂଜା ଘେନି । କୋମଳ ବାକ୍ୟ ପଦ୍ମଯୋନି ॥
ସଦୟେ ଗୃହ୍ନି ବେଦବର । ରାଜାଙ୍କୁ କରନ୍ତି ଉତ୍ତର ॥
ହେ ପ୍ରିୟବ୍ରତ କହୁଁ ତୋତେ । କ୍ରୋଧ ନ କର ବୃଦ୍ଧ ଚିତ୍ତେ ॥
ଅମ୍ଭେ ନାରଦ ଅବ ଯେତେ । ଯାହାର ଭବ ଚିନ୍ତା ଚିତ୍ତେ ॥
ତପସ୍ୟା ବିଦ୍ୟା ଯୋଗ କରି । ପଣ୍ଡିତ ପଣକୁ ଆଚରି ॥
ନୃହରି ଧର୍ମରେ ତତ୍ପର । କର୍ମ ନାଶନେ ଅଧିକାର ॥
ଜନ୍ମ ମରଣେ କର୍ମ ବନ୍ଧ । ଜୀବନ ଶରୀର ଯେ ଦେଖି ॥
ଶୋକ ମୋହକୁ ନିତ୍ୟ ପାଇ । ସୁଖ ଦୁଃଖକୁ ସେ ଭୁଞ୍ଜଇ ॥
ଯାହାର ବାକ୍ୟ ଗୁଣମାନେ । ଦେହ ବସ୍ତ୍ର ଦୃଢ଼ ଏ କର୍ମେ ॥
ଦ୍ୱିପଦ ଚତୁଷ୍ପଦ ଯେତେ । ସର୍ବେ ବନ୍ଧନ ମୋହଗତେ ।୫୦।
ଦୁଃଖ ସୁଖ ଗୁଣ କର୍ମରେ । ଏମାନ ଘେନି ସଙ୍ଗତରେ ॥
ଈଶ୍ୱର ସୃଷ୍ଟିର କରତା । ସକଳେ ତାହାଙ୍କୁ ସେବନ୍ତା ॥
ସେ ଯେ ଈଶ୍ୱର ବଶ ଦେଖି । ଅନ୍ଧାର ପ୍ରାୟ ଭ୍ରମୁଥାଇ ॥
ଦେଖୁ ଦେଖୁ ଯେ ଭ୍ରମୁଥାଇ । ସେ କଥା ପ୍ରାଣୀ ନ ଜାଣଇ ॥
ନିଦ୍ରାକୁ ପାଇ ଯେତେକ ନରେ । ଅନ୍ୟ ଦେହରେ ଭୋଗ କରେ ॥
ସ୍ୱପ୍ନ ଯେ ପ୍ରାଣୀମାନଙ୍କର । କେବେହେଁ ଭସ୍ମ ନୁହେ ଦୂର ॥
ଇନ୍ଦ୍ରିୟମାନଙ୍କରେ ଯୁକ୍ତ । ତେଣୁ ହୁଅନ୍ତି ଅବରତ ॥
ଯେ ବୁଧ ଜଣେ ଇନ୍ଦ୍ରିମାନ । ତାହାକୁ ହୃତ ଶୁଦ୍ଧକର୍ମ ॥
ନାଶ ନ କରଇ ତାହାରେ । ଯେଣୁ ଏ ରମେ ଗୃହାନ୍ତରେ ॥
ଏ ଆଦି ଜାଣେ ଯେବା ଜନ । ଗୃହେ କ ରମେ ତାର ମନ ।୬୦।
ଏହାକୁ ଜାଣି ବୁଧ ନରେ । ଆନନ୍ଦେ ଭ୍ରମନ୍ତି ସଂସାରେ ॥
ଯେ ପଦ୍ମନାଭ ପଦାଶ୍ରିତ । ସର୍ବ ସଙ୍ଗରୁ ସେହି ମୁକ୍ତ ॥
ସଂସାର ସାରକୁ ଭଜଇ । ଅନ୍ତେ ପରମ ଗତି ପାଇ ॥
ଏମନ୍ତେ ତ୍ରିଭୁବନ ଗୁରୁ । ଭକ୍ତଙ୍କ ପ୍ରଭୁ ମହାମେରୁ ॥
ନାମ ତା ଭଗବାନ ଦାସ । ସ୍ୱକାର୍ଯ୍ୟେ କଲେ ସେ ବିଶ୍ୱାସ ।

ନାରଦ ଋଷି ପ୍ରିୟବ୍ରତ । ପୁଚ୍ଛିଲେ ଧର୍ମ କଥା ଯେତେ ॥
ନାରଦ ବାକ୍ୟେ ମନ ଦେଇ । ମନୁ ଆତ୍ମଜ ବିଶୁରଇ ॥
ବିଷୟରସକୁ ସେ ତେଜି । ହୋଇ ସାତ୍ତ୍ୱିକମତେ ଭଜି ॥
ଏଥି ଅନ୍ତରେ ପୃଥ୍ୱୀରେ । ନିବୃତ୍ତ ହୋଇଲା କ୍ରମରେ ॥
ଅଖିଳ-ଜଗତ-ନନ୍ଦନ । ନିବେଶି ଭଗବାନେ ମନ ॥
ଆଦିପୁରୁଷ-ପାଦ ଧ୍ୟାଇ । ମନ ନିବେଶି ନିତ୍ୟ ନହିଁ ॥
ପୃଥ୍ୱୀ ପରିପାଳନରେ । ଚିତ୍ତ ନିବେଶି ନିରନ୍ତରେ ॥
ଯେ ବିଶ୍ୱକର୍ମା ପ୍ରଜାପତି । ତାର ଦୁହିତା ମହାସତୀ ॥
ଏଥି ଉତ୍ତାରେ ମହୀପତେ । ବିଭା ହୋଇଲେ ଯଥୋଚିତେ ॥
ଦଶ ଆତ୍ମଜ ତାର ତହିଁ । ଜନ୍ମିଲେ ଯଥା ଗୁଣ ବହି ॥
ହୋଇଲେ ବେନି କନ୍ୟା ଜନ୍ମ । ପୁତ୍ରଙ୍କ ନାମ ଏବେ ଶୁଣ ॥
ସେ ବାଳ କବି ମହାବୀର । ଊର୍ଦ୍ଧ୍ୱରେତା ହେଲେ ସେ ତାର ॥
ଉତ୍ତମ ତାମସରେ ରତ । ମନରେ ହୋଇଲେ ବିଖ୍ୟାତ ॥
ଅଳ୍ପ ବିଦ୍ୟାରେ ଭକ୍ତି କରି । ମୁଁ ଶମ୍ଭୁ ଉପରେ ବିହରି ॥
ପରମହଂସ ଦୀକ୍ଷା ଧରି । ସକଳ ଚେଷ୍ଟା ପରିହରି । ୮୦ ।
ସର୍ବ ଜୀବରେ କୃପା ବହେ । ଭଗବାନ ବାସୁଦେବ ଏ ॥
ଭୃତ୍ୟ ଆରତ ପ୍ରାଣୀଙ୍କର । ଶରଣ-ରକ୍ଷଣ ଶ୍ରୀଧର ॥
ସେ ପାଦପଦ୍ମ ଆଶ୍ରୟରୁ । ନିରତେ ନାମକୀର୍ତ୍ତନରୁ ॥
ପରମ ଭକ୍ତି ପ୍ରଭାବରେ । ଦୟା ବହିଲେ ପ୍ରାଣୀଠାରେ ॥
ଭବେ ନିର୍ମଳଚିତ୍ତ ହୋଇ । ସର୍ବଭୂତରେ ଆତ୍ମା ସେହି ॥
ସେ ପ୍ରଭୁ ପଙ୍କଜଚରଣେ । ନିତ୍ୟ ଭକତି ଦାସପଣେ ॥
ଦ୍ୱିତୀୟ ପତ୍ନୀ ଗର୍ଭେ ତାର । ହେଲେ ଯେ ତିନୋଟି କୁମର ॥
ଉତ୍ତମ ତାମସ ରୈବତ । ମନ୍ୱନ୍ତର ହୋଇଲେ ବିଦିତ ॥
ଏମନ୍ତେ ପୁତ୍ରମାନ ଯେଣି । ଚିରକାଳେ ସେ ରାଜା ପୁଣି ॥
ପୁରୁଷାର୍ଥର ଆଶ୍ରା ନେଲେ । ପୃଥ୍ୱୀ ନିଷ୍କଣ୍ଟକ କଲେ । ୯୦ ।
ଧର୍ମପଣକୁ ନ ଅଚରେ । ଆପଣା ପତ୍ନୀ ବିଷୟରେ ॥
ପ୍ରତିଦିନରେ ସ୍ନେହଭରେ । ବିହରେ ସେ ଯେ ନୃପବରେ ॥
ତାହାର ନବୀନ ଯୌବନେ । ମନ୍ଦହାସ ଅବଲୋକନେ ॥

ଆବେଶ ହୋଇ ଦଣ୍ଡଧାରୀ । ନାରୀ ସ୍ୱଭାବେ ବେଶକାରୀ ॥
ମେରୁରୁ ସୂର୍ଯ୍ୟଲୋକ ଯାଏ । ରାଜାର ତେଜ ବୀର୍ଯ୍ୟ ବଢ଼େ ॥
ତେଜେ ସୂର୍ଯ୍ୟ-ତେଜ ରହିତ । ତପସ୍ୟାବନ୍ତ ପ୍ରିୟବ୍ରତ ॥
ପ୍ରତାପ ଦେଖାଇବା ହେତେ । ଅଦ୍ଭୁତ ଜ୍ୟୋତିର୍ମୟ ରଥେ ॥
ରଜନୀ ଦିବସେ ଭ୍ରମଇ । ଦ୍ୱିତୀୟ ସୂର୍ଯ୍ୟ ପ୍ରାୟ ହୋଇ ॥
ଏମନ୍ତ ଦେଖି ରାଜା କୃତ । ମନୁ ମିଳିଲେ ରାଜାଗ୍ରତ ॥
ଏ ତୁମ୍ଭ ଅଧିକାର ନାହିଁ । ନିଷେଧ କଲେ ରାଜା ଗୃହିଁ ॥
ସେ ରାଜା ରଥର ଚକର । ହୋଇଲା ଯେତେକ ବିସ୍ତାର ॥
ତେଣୁ ସାତ ସିନ୍ଧୁ ହୋଇଲା । ପୃଥିବୀ ସପ୍ତ ଭାଗ କଲା ॥
ଆନନ୍ଦମନେ ଦଣ୍ଡଧାରୀ । ଏହା ସେ କର୍ମରେ ଚତୁର ॥
ପୁତ୍ରଙ୍କୁ ଅନୁଗ୍ରହ କଲେ । ଯଥାବିଭାଗ କରି ଦେଲେ ॥
ଦୁହିତା ଊର୍ଜସ୍ୱତୀ ନାମ । ତାହାକୁ କଲେ ଶୁକ୍ରେ ଦାନ ॥
ଏଥିଅନ୍ତରେ ରାଜା ଚିତ୍ତେ । ସ୍ୱନିନ୍ଦା କଲା ସେ ବହୁତେ ॥
କୁସଙ୍ଗେ ଆସକ୍ତ ସେ ହେଲା । ବଡ଼ ଅସାଧୁପଣ କଲା ॥
ଏଣୁ ଇନ୍ଦ୍ରିୟବଶ ହୋଇ । ଅବିଦ୍ୟା ବିଷୟରେ ଥାଇ ॥
ଏଣୁ ଏ ଧିକ ମୋ ଜୀବନ । ନିଶ୍ୱାସ ମନେଣ ପ୍ରସନ୍ନ ॥
ଇଷ୍ଟଦେବତା ପ୍ରସନ୍ନରେ । ବୈରାଗ୍ୟ ଜନ୍ମିଲା ମନରେ ॥
ବିଷୟ ଚେଷ୍ଟା ସେ ଛାଡ଼ିଲା । ଇନ୍ଦ୍ରିୟମାନ ନିରୋଧିଲା ।୧୧।
ରାଜ୍ୟ ସମ୍ପଦ ନ ଇଚ୍ଛିଲା । ଯଥାବିଭାଗେ ପୁତ୍ରେ ଦେଲା ॥
ସ୍ୱପତ୍ନୀ ତେଜେ ମୃତ ପ୍ରାୟୁ । ହୋଇଲା ତା ଶରୀରମସ୍ତୁ ॥
ମହାନୁଭବ ଭଗବାନ । ନାରଦ ବ୍ରହ୍ମାର ନନ୍ଦନ ॥
ତାହାଙ୍କ ପଥ ଅନ୍ୱେଷି କଲା । ନିଷ୍ଠୁର ନିବୃତ୍ତି ହୋଇଲା ॥
ଯେଉଁ ରାଜାର ଏତେ କୃତ୍ୟ । ଗାୟନ କରନ୍ତି ଜଗତ ॥
ପ୍ରିୟବ୍ରତର କଲା କର୍ମ । ଏହା କେ କରିବାକୁ କ୍ଷମ ॥
ଏହାର ରଥ ଚକ୍ର ମାର୍ଗେ । ସାତ ସମୁଦ୍ର ମହାର୍ଣ୍ଣବେ ॥
ଦ୍ୱୀପ ବିଭାଗ ମହୀ କରି । ଦ୍ୱୀପ ଉପଦ୍ୱୀପ ବିସ୍ତରି ॥
ଯେ କଲା ମନୁର କୁମର । ପୃଥିବୀମଧ୍ୟେ ଅଗୋଚର ॥
ସେ ପ୍ରିୟବ୍ରତର ମହିମା । ତ୍ରୈଲୋକ୍ୟେ କେ ଦେବ ଉପମା ।

ପ୍ରିୟ ଅଖିଳ ଲୋକଙ୍କର । ମହାମହିମ ନୃପବର ॥
ପ୍ରିୟବ୍ରତ ରାଜା ଚରିତ । କହଇ ବିପ୍ର ଜଗନ୍ନାଥ । ୧୨୩ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ପ୍ରିୟବ୍ରତ
ରାଜା ଚରିତକଥନଂ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ ।

ଦ୍ୱୀପସ୍ୟ ଯୋକ୍ତମାଗ୍ନୀଧ୍ର ଚରିତଂ ଶ୍ଳୋକସମ୍ମତଂ ।
ପତ୍ନ୍ୟାଂ ହ ପୂର୍ବଚିତ୍ତ୍ୟାଂ ଯୋ ନାଭିମୁଖ୍ୟାନଜୀଜନତ୍ ॥
ଅସ୍ମିନ୍ବଂଶେ ପ୍ରିୟଭ୍ରୋଽଭୂମଗ୍ନୀଧ୍ରଂ ଶ୍ଳୋକପୁଙ୍ଗବଃ ।
ବହ୍ନିସନ୍ନିଭ ତପୋଽଦିଂ ଚରିତଂ ମୁନିରବ୍ରବୀତ୍ ॥

ଶ୍ରୀ ଶୁକ ଉବାଚ ।

ଏମନ୍ତେ ପିତାଙ୍କ ଅନ୍ତରେ । ତାହାଙ୍କ ଆଜ୍ଞା ଘେନ ଶିରେ ॥
ଜମ୍ବୁଦ୍ୱୀପର ପ୍ରଜାଜନ । ଅଗ୍ନୀଧ୍ର କରଇ ପାଳନ ॥
ଏମନ୍ତେ କେତେ ଦିନ ଗଲା । ଅଗ୍ନୀଧ୍ର ମନେ ବିଚାରିଲା ॥
ସନ୍ତୋଷେ ପିତୃଲୋକଙ୍କର । ଏମନ୍ତେ ହୋଇଲା ବାହାର ॥
ଏମନ୍ତେ ମନେ ବିଚାରିଲା । ସୁମେରୁଗିରିରେ ମିଳିଲା ॥
ସୁରବନିତା କ୍ରୀଡ଼ା ସ୍ଥାନେ । ତହିଁରେ ନିଗମ ଯେ ବନେ ॥
ସଂସାର କରିବାକୁ ଧ୍ୟାଇ । ବସିଲା ସ୍ଥିରମନ ହୋଇ ॥
ତାହା ଜାଣିଲେ ଭଗବାନ । ଯେ ବ୍ରହ୍ମ ସୃଷ୍ଟିର କାରଣ ॥
ଅତି ସୁନ୍ଦରୀ ଅପସରୀ । ଉର୍ବଶୀ ନାମ ଯେ ତାହାର ॥
ତାହାର ଉପବନ ଲାଗେ । ମିଳିଲା ଅପସରୀ ବେଗେ । ୧୦ ।
ଅତି ମଞ୍ଜୁଳ ମନୋହର । ବିବିଧ ବୃକ୍ଷ ଯେ ସୁନ୍ଦର ॥
ଘନ କାନନ ଲତାମାନ । ଅଛନ୍ତି ନାନା ପକ୍ଷିଗଣ ॥
ଗୁଞ୍ଜି ଭ୍ରମର ଧ୍ୱନିମାନ । କରନ୍ତି ହରଷିତ ମନ ॥
ସ୍ୱଚ୍ଛ ନିର୍ମଳ ସ୍ୱାଦୁ ବାରି । ବିବିଧ ଜଳାଶୟେ ପୂରି ॥
କୁକ୍କୁଟ କାରଣ୍ଡବ ହଂସ । କରନ୍ତି ରୁଚିର ବିଳାସ ॥
କାନନେ ନାନା ପୁଷ୍ପସାର । ପଦ୍ମ ପ୍ରଫୁଲ୍ଲିତ ସରୋବର ॥

ମନ୍ଦ-ପବନ ବହେ ନିତ୍ୟ । ତା ଦେଖି କନ୍ୟା ତୋଷଚିତ୍ତେ ॥
କରଇ ଲଳିତ ଗାୟନ । ବିନୋଦେ ପାଦ ଗତିମାନ ॥
ଚରଣ ନୂପୁର ତାହାର । ଧ୍ୱନି କରଇ ମନୋହର ॥
ଅତି ମଞ୍ଜୁଳ ତାହା ଶୁଣି । ନୃପକୁମର ଶିରୋମଣି ॥ ୨୦ ॥
ସମାଧିଯୋଗରୁ ତ ହାରି । ନୟନ କମଳ ଯୁଗଳ ॥
ଈଷିତେ ବିକସିତ ହେଲା । ମନ୍ଦମଧୁରେ ସେ ଗୃହିଲା ॥
ନିକଟେ ତାର ମୁଖ ଦେଖି । ପିଛୁଡ଼ି ନ ପାରଇ ଆଖି ॥
ଭ୍ରମରପନ୍ତି ସେ ଯେସନେ । ପୁଷ୍ପ ଲୋଭନ୍ତି ବନେ ବନେ ॥
ଦେବତାମାନ ଆଦି ଯେତେ । ଉଲ୍ଲାସ ହୁଅନ୍ତି ଦେଖନ୍ତେ ॥
ଯାହାର ଅବଲୋକନରେ । ଶରୀର ବଚନ ମଧୁରେ ॥
ପ୍ରାଣୀର ମନକୁ ସେ ନେଇ । ଅନଙ୍ଗେ ଅସ୍ଥିର କରଇ ॥
ସେ ଯେତେବେଳେ ବାକ୍ୟ କହୁ । ବଦନୁ ସୁଗନ୍ଧ ଆସଇ ॥
ତେଣୁ ଲୁବ୍ଧକ ଭୃଙ୍ଗଗଣ । ଭ୍ରମନ୍ତି ତାର ସନ୍ନିଧାନ ॥
ତେଣୁ ନ ପାରେ ବେଗେ ଯାଇ । ପବନେ ବସନ ଚଳଇ ॥ ୩୦ ॥
ତା ଦେଖି ନୃପତି ନନ୍ଦନ । ହୋଇଲା ଅନଙ୍ଗେ ଅଧୀନ ॥
ଜଡ଼ର ପ୍ରାୟେ ସେ ହୋଇଲା । କାହୁଁ ତୁ ଅଇଲୁ ବୋଇଲା ॥
ବନଦେବତା ମାୟା କରି । ବନେ ଖେଳବ ବନ ହେରୁ ॥
ଚାମର ଅସ୍ତ୍ରମାନ ଯୋଖି । କିମର୍ଥେ ବୁଲୁ ତୁ ମୃଗାକ୍ଷି ॥
ମୋ ଆଗେ କହ ତୁ ବଚନ । ମୃଗଙ୍କୁ ଲୋଡୁ କି କାରଣ ॥
ତୋ ବେନି କମଳଲୋଚନ । ନିଷ୍ଠୁର ଅନଙ୍ଗର ବାଣ ॥
କାହାକୁ ବିନ୍ଧିବୁ ସୁନ୍ଦରି । କହ ତୁ ମାୟା ଦୂରେ କରି ॥
ଯେଉଁ ଲୋକଙ୍କୁ ଦୟା କରି । ଅନଙ୍ଗ ଅନଳେ ନ ମାରି ॥
ତୋହର ଶିରୁଁ ଶ୍ଳଥ ହୋଇ । କୁସୁମମାନ ପଡ଼ୁଛଇ ॥
ଚରଣପଙ୍କଜେ ତୋହର । ମଧୁର ବାଜଇ ନୂପୁର ॥ ୪୦ ॥
ଶରୀର ପୁଲକ ତୋହର । ଉତ୍ପୁଳ ଘନ କୁଚଭାର ॥
କି ଅଛି ଚକ୍ରବାକ ବେନି । ଶରୀରେ ବହୁଛୁ କାମିନି ॥
ମଧ୍ୟଭାଗ ଯେ କୃଶ ତୋର । ଅଟଇ ଅତି ମନୋହର ॥
ଯହିଁ ମୋ ନୟନ ଯୁଗଳ । ଅଶ୍ରୁ କଲାକି ନିଶ୍ଚଳ ॥

ଏ ମୋର ତପୋବନ ଭୂଇଁ । ଅତି ସୁନ୍ଦର ବଲ୍ଲୀ ତୁହି ॥
ଯାହାର ନୟନ ଗୋଚର । ହୋଇବ ରୂପ ଗୁଣ ତୋର ॥
ଅନଙ୍ଗ-ବଶ ନୋହୁ ସେ ତ । ରହିବ ଏମନ୍ତ ନୋହେ କି ॥
ଅଦ୍ଭୁତ ସୁଧାରସ ସାର । ଅନନ୍ତ କରଇ ଅଧର ॥
ସୁରଙ୍ଗ ଦଶନ ବାହାର । ତ ଅଛା ତେଜବା ପଦ୍ମାକର ॥
ବିଷ୍ଣୁ କଳାକୁ ତୁ କି ଧନ । ମର୍ତ୍ତ୍ୟକୁ ଅଇଲୁ ସୁନ୍ଦର ।
ମକରକୁଣ୍ଡଳ ତୋ କର୍ଣ୍ଣେ । ଚଞ୍ଚଳ ମୀନ କି ନୟନେ ॥
ଏ ତୋର ଦନ୍ତ ପନ୍ତି ଦୁଇ । ଦାଡ଼ିମ ମଞ୍ଜି କି ଗଞ୍ଜଇ ॥
ଏ ବନ ସରୋବରେ ମୁହିଁ । କଷ୍ଟେ ତପସ୍ୟା ଆଚରଇଁ ॥
ତପସ୍ୟା ପୂର୍ଣ୍ଣ ହେଲା ମୋର । ଯେଣୁ ତୁ ନୟନ ଗୋଚର ॥
କବା ହରିଙ୍କ ପ୍ରସାଦରେ । ସୁନ୍ଦର ମିଳିଲୁ ମୋଠାରେ ॥
ପ୍ରସନ୍ନ ହୁଅ ମୋତେ ତୁମ୍ଭ । ମିଶ୍ରଭାବରେ ମୁଁ ଭଜଇଁ ॥
ତୋତେ ଯେ ନ ଜାଣଇଁ ମୁହିଁ । ବ୍ରହ୍ମା କି ଦେଲେ ପଠାଇ ॥
ତୋ ରୂପ ଦେଖି ମୋର ମନ । ରହିଲା ନିଶ୍ଚଳେ ନୟନ ॥
ହେ ପୀନସ୍ତନ ଶୁଭ୍ରକେଶି । ତୁ ମୋ'ତେ ଭଜ ଗୋ ଷଟଙ୍ଗୀ ॥
ଛାଡ଼ି ମୋହର ତୋର ତହିଁ । ନିଶ୍ଚଳେ ରହିଲା ଗୋ ସହି ।
ସୁଫଳ କର ସଖି ଏହା । ସ୍ୱଭାବେ ଧୂର୍ଣ୍ଣି ପୁଣ୍ୟଦେହା ॥
ଏମନ୍ତେ ସେହି ନୃପମଣି । କହି ବିବିଧ ଚାଟୁବାଣୀ ॥
ମଧୁର କୋମଳ ବଚନ । କନ୍ୟାର ହରିଲା ସେ ମନ ॥
ନୃପକୁମର ରୂପ ଗୁଣ । ଦିବ୍ୟ ଯୌବନ ଚରପଣ ॥
ଏମନ୍ତ ଗୁଣେ କନ୍ୟା ମନ । ତକ୍ଷଣେ ହୋଇଲା ବନ୍ଧନ ॥
ଅଗ୍ନିଧ୍ର-ସଙ୍ଗତେ ସୁନ୍ଦରୀ । ଲକ୍ଷେ ବରଷ ଭୋଗ କରି ॥
ଜମ୍ବୁଦ୍ୱୀପରେ ରାଜା ହୋଇ । ବିବିଧ ଭୋଗ ସେ ଭୁଞ୍ଜଇ ॥
ସେ ପୂର୍ବଚିତ୍ତିଗର୍ଭେଁ ଜାତ । ହୋଇଲା ଅଗ୍ନିଧ୍ରର ସୁତ ॥
ନାଭି ରମ୍ୟକ କିଂପୁରୁଷ । ଭଦ୍ରାଶ୍ୱ କୁରୁ ହରିବର୍ଷ ॥
ହିରଣ୍ମୟ ଯେ ଇଳାବୃତ୍ତ । କେତୁମାଳ ଏ ନବସୁତ ।
ବରଷ ବରଷକେ ତାର । ହୋଇଲା ଏ ନବ କୁମର ॥
ସୁତକୁ ତେଜି ପୂର୍ବଚିତ୍ତି । ବ୍ରହ୍ମାର ଚରଣେ ସେବନ୍ତି ॥

ମାତାର ପୁଣ୍ୟବନ୍ତୁଁ କଣ । କ୍ରମରେ ଧର୍ମ୍ମକୁ ଅଚର ॥
ପିତା ବିଭାଗ ଅନୁମତେ । ଜମ୍ବୁଦ୍ୱୀପକୁ ଯଥୋଚିତେ ॥
ଭୋଗ ଯେ କଲେ ଏ କ୍ରମରେ । ପିତାର ଅଜ୍ଞା ଘେନ ଶିରେ ॥
ଏଥୁଅନ୍ତରେ ପୁଣ ଶୁଣ । ହୋଇଲ ଅଗ୍ନିଧ୍ର ରାଜନ ॥
ବଚ୍ଛଧନର ସେ ଅନ୍ତରେ । ରାଜାଧିକାର ପାଇ ତାରେ ॥
ପିତା ପିତୃଲୋକ ଅନ୍ତରେ । ପୁତ୍ର ତା ବିଭୁ ଏ ସଂସାରେ ॥
ମରୁଦେବୀ ଯେ ପ୍ରତିରୂପା । ଉଗ୍ରଦଂଷ୍ଟ୍ରା ଯେ ଲତା ରୂପା ॥
ଦେବଦାଧିତ ରମ୍ୟା ଶ୍ୟାମା । ନାରୀ ଭଦ୍ରା ଏ ନବ ବାମା ॥
ନବକ୍ରମରେ ବିଭା ହେଲେ । ଆନନ୍ଦେ ସୁଖେ ବିହରିଲେ ॥
କହଇ ଦିଜ ଜଗନ୍ନାଥ । ଅଗ୍ନିଧ୍ର ସୁତର ଚରିତ । ୮୨ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଅଗ୍ନିଧ୍ର
ସୁତଚରିତ କଥନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ ।

ତୃତୀୟେ ଚରିତଂ ନାଭେଃ ପରଂ ମଙ୍ଗଳମୀର୍ଯ୍ୟତେ ।
ଯସ୍ୟ ଯଜ୍ଞେ ଦ୍ରଷ୍ଟତଃ ସନ୍ ପୁତ୍ରୋଭୂଦୃଷଭୋ ହରିଃ ॥

ଶ୍ରୀ ଶୁକ ଉବାଚ ।

ଅଗ୍ନିଧ୍ର ପୁତ୍ରଙ୍କ ମଧ୍ୟରୁ । ନାଭି ଅପୁତ୍ରିକ ହେବାରୁ ॥
ଇଚ୍ଛା ହୋଇ ପୁତ୍ର ତାରେ । ପତ୍ନୀ ମରୁଦେବୀର ଠାରେ ॥
ଭଗବାନ ଯଜ୍ଞପୁରୁଷେ । ତାହାଙ୍କୁ ଭଜିଲା ବିଶ୍ୱାସେ ॥
ନାଭି ଯେ ଶୁଦ୍ଧଭାବ ଧରି । ମନ୍ତ୍ର ଅଦ୍ଭୁତ ହବ ଭରି ॥
ତାହାର ଶ୍ରଦ୍ଧାଭାବୁଁ କରି । ଯଜ୍ଞେ ପ୍ରସନ୍ନ ନରହରି ॥
ଭକ୍ତ ଲକ୍ଷଣ ଭଗବାନ । ଯେ ଧର୍ମ ଅମ୍ଭାର କାରଣ ॥
ରାଜାର ସନ୍ତୋଷ ନିମନ୍ତେ । ସ୍ୱଇଚ୍ଛା ଅତି ସୁଖଚିତ୍ତେ ॥
ମନ ନୟନ ହୃଦଦେଶ । ଆନନ୍ଦେ କଲେ ଯେ ପ୍ରକାଶ ॥
ତେଜେ ବିରାଜମାନ ହୋଇ । କୌସ୍ତୁଭମଣି ବିରାଜଇ ॥
ଦିବ୍ୟାଙ୍ଗେ ମକରକୁଣ୍ଡଳ । ଶୋଭିତ ମୁକୁଟ ଶିଖର । ୧୦ ।

ହାର କେୟୂର ସେ ନୂପୁର । ଏ ଅଙ୍ଗ ଭୂଷଣ ଶରୀର ॥
ସେ ଯଜ୍ଞବ୍ରତୀ ବିପ୍ରଙ୍କର । ଉସ୍ତ୍ର ହୋଇଛୁ ହୃଦର ॥
ନିର୍ଦ୍ଧନ ଗୃହେ ପାଦ ଧନ । କୋଷ୍ଠ ନିଧି ପ୍ରାପ୍ତ ଯେସନ ॥
ତେମନ୍ତ ହୋଇ ଦ୍ୱିଜଗଣେ । ଯଜ୍ଞରେ ଥିଲେ ଯଜମାନେ ॥
ପରମବ୍ରହ୍ମଙ୍କୁ ସେ ପାଇ । ନମିଲେ ଶିରେ କର ଦେଇ ॥
ହେ ନାଥ ପରମ କାରଣ । ତୁମ୍ଭର ଅଟୁ ଭୃତ୍ୟଗଣ ॥
ସର୍ବ ପୂଜିତ ତୁ ଠାକୁର । ସେବା ଯେ ହେଳ ତୁ ଅମ୍ଭର ॥
ଏ ତୋର ଚରଣାରବିନ୍ଦେ । ନମିଲୁ ପରମ ଆନନ୍ଦେ ॥
ତୋର ଭିଆଣ ଏ ଜଗତ । ପ୍ରକୃତି ପୁରୁଷ ସଂଘାତ ॥
ତ୍ରିଗୁଣେ ଜୀବ ବନ୍ଦୀ ହୋଇ । ଏ ଜୀବ ସଂସାରେ ଭ୍ରମଇ ॥
ସୃଷ୍ଟିର କର୍ତ୍ତା ଯେତେକ ଜନ । ସେ ସର୍ବେ ତୋହର ଅଧୀନ ॥
ହେ ନାଥ ତୋହର ମହିମା । ସଂଖ୍ୟାରେ କେ କରିବ ସୀମା ॥
ସାକ୍ଷାତେ ନୁହଇ ଗୋଚର । ହେ ପ୍ରଭୁ ରୂପ ଗୁଣ ତୋର ॥
ତୋହର ନାମ ଉଚ୍ଚାରଣ । ସକଳ ପାପ ବିଧ୍ୱଂସନ ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ତୁ ନାଥ କରୁଣାସାଗର ॥
ମଲ୍ଲିକା ଦୁର୍ବାଦଳ ସାର । ପୂଜନ୍ତି ଏ ତୋର ପୟର ॥
ତେଣେ ତୁ ପରମ ସନ୍ତୋଷ । ପ୍ରସନ୍ନ ହୁଅ ହୃଷୀକେଶ ।
ଶିଶୁଙ୍କ ବୁଦ୍ଧିକି ଯେସନେ । ତେମନ୍ତ ପ୍ରାପ୍ତ ଅମ୍ଭେମାନେ ॥
ପରମ ଦୟାନ୍ତ ସାଗର । ବ୍ରଜାଙ୍କୁ ପ୍ରଭୁ କୃପା କର ॥
ଏମନ୍ତ ସ୍ତୁତି ଶୁଣି ତୋଷ । ଜଗତ ପ୍ରଭୁ ଯେ ଅଶେଷ ।୩୦।
ଗଜାର ଚକ୍ଷୁର ଗୋଚର । ହୋଇଲେ ଅତି ମନୋହର ॥
ପୁଣି କହନ୍ତି ଦେବଗଣ । ହେ ନାଥ ସାବଧାନେ ଶୁଣ ॥
ଜ୍ଞାନ ଅନଳେ ତାପ ଦଗ୍ଧ । ତୋ ପାଦପଦ୍ମଯୁଗ ଧ୍ୟାୟି ॥
ଯେ ଆତ୍ମାରାମ ମୁନିଗଣ । ସେବନ୍ତି ତୋହର ଚରଣେ ॥
ଏ ତୋର ଗୁଣ ଜ୍ଞାନମାନ । କରନ୍ତି ଅନ୍ତରେ ଧ୍ୟାନ ॥
ତୁ ନାଥ ଅଖିଳ ଠାକୁର । ପରମ ମଙ୍ଗଳର ଘର ॥
ଅମ୍ଭେ ଭକ୍ତର ସ୍ୱାନଜନ । କରିବୁଁ କାହିଁ ତୋ ସ୍ମରଣ ॥
ସକଳ କଳୁଷ ନାଶନ । ନିର୍ମଳ ତୋ ଗୁଣ ଗାୟନ ॥

ଅନ୍ତର ମରଣ ଦଶାରେ । ତୋ ନାମ ହେବ କି ମନରେ ॥
ଏମନ୍ତ କୃପା ପ୍ରଭୁ କର । ଅଖିଳ ବ୍ରହ୍ମାଣ୍ଡ ଠାକୁର । ୪୦ ।
ଏବେ ତୁ ଶୁଣ ଭବଗ୍ରାହ । ଏ ରାଜପୁଅ କାମୀ ହୋଇ ॥
ତୋହର ପ୍ରସାଦେ ଏ କୁମର । ମାଗଇ ତୋର ଦରଶର ॥
ଏ ସର୍ବ ଭୋଗ ମୋକ୍ଷପଦ । ସକଳ ଦେଉ ତୁ ଗୋବିନ୍ଦ ॥
ନିର୍ଦ୍ଧନ ପ୍ରାଣୀଙ୍କି ଯେସନେ । ମାଗନ୍ତି ଧନବନ୍ତ ଜନେ ॥
ଏଥୁଅନ୍ତରେ ସେ ରାଜନ । ନିଶ୍ଚଳ ଚିତ୍ତେ କରେ ଧ୍ୟାନ ॥
ଈଶ୍ୱର ମୁଖକୁ ସେ ଚାହିଁ । ହରଷେ ବଚନ ବୋଲଇ ॥
ହେ ନାଥ ପରମ ମଙ୍ଗଳ । ପ୍ରସନ୍ନ ହୁଅ ଅଢମୂଳ ॥
ଏ ତୋର ଚରଣାରବିନ୍ଦେ । ଆଶକ୍ତ ନ କର ଗୋବିନ୍ଦେ ॥
ଏ ଭବ-ସଂସାରୁ ଯେସନ । ଯାହାରେ ନିହନ୍ତି ଅଭିନ୍ନ ॥
ତୋର ଚରଣେ ନ ଭଜନ୍ତି । ଅଜ୍ଞାନେ ସଂସାରେ ପଡ଼ନ୍ତି ॥
ସକଳ କର୍ତ୍ତା ତୁ ଈଶ୍ୱର । ତୋର ଭିଆଣ ଏ ସଂସାର ॥
ଏମନ୍ତେ ନାଭିସୁତ ଭଣି । ଦେବାଧିଦେବ ଶିରୋମଣି ॥
ଅଖିଳ ବ୍ରହ୍ମାଣ୍ଡଗଣ । ସେବନ୍ତି ସେ ପ୍ରଭୁ ଚରଣ ॥
ସଦୟେ ଚାହିଁ ଭଗବାନ । କହନ୍ତି କମଳଲୋଚନ ॥

ଶ୍ରୀଭଗବାନୁବାଚ ।

ହେ ସର୍ବ ମୁନିଜନ ଯେତେ । ସ୍ତୁତିରେ ବଶ କଲ ମୋତେ ॥
ମୋହର ରୂପିତ ଅପାର । କରୂପେ ହୋଇବ କୁମର ॥
ତପସ୍ୟା ବ୍ରହ୍ମବାକ୍ୟମାନ । ବ୍ୟର୍ଥ ହୋଇବ କେସନ ॥
ବ୍ରହ୍ମାର କୁଳ ଏ ହୁଅଇ । ମୋହର ପାଳିବା ଯୋଗାଇ ॥
ଏବେ ମୁଁ ପୁତ୍ରରୂପ ହୋଇ । ଅଂଶରେ ଅବତରିବଇଁ ॥
ରାଜାର ହୃଦେ ମୁନିଗଣ । ଶୁଣିଲେ ଏମନ୍ତ ବଚନ ॥
ଏମନ୍ତ ମୁନିଗଣେ ହେର । ପ୍ରସନ୍ନ କରାଇଲେ ହର ॥
ରାଜାର ପ୍ରିୟଭାବରେ । ସେ ପ୍ରଭୁ ମରୁଦେବୀଠାରେ ॥
ସଂସାର ଧର୍ମ ଆଚରଣ । ଅବତରିଲେ ନାରାୟଣ ॥
କହଇ ବିପ୍ର ଜଗନ୍ନାଥ । ରାଜା ଯଜ୍ଞ ସ୍ତୁତି ଚରିତ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ରାଜା ଯଜ୍ଞସୁତ
ଚରିତେ ନାମ ତୃତୀୟୋଽଧ୍ୟାୟଃ ।



# ଚତୁର୍ଥ ଅଧ୍ୟାୟ ।

ଚତୁର୍ଥାଦ୍ଧର୍ଷିଭିଃ ପ୍ରୋକ୍ତମୃଷଭସ୍ୟାଦ୍ଭୁତଂ ମହତ୍ ।
ଲୋକାର୍ଥଂ ଯେନ ସତ୍କର୍ମ ନୈଷ୍କର୍ମ୍ୟଞ୍ଚ ନିଦର୍ଶିତଂ ॥
ଚତୁର୍ଥେ ଚ ପୁତ୍ରସ୍ୟ ରାଜ୍ୟଂ ତପସ୍ୟୋପବର୍ଣ୍ଣ୍ୟତେ ।
ଯସ୍ୟ ରାଜ୍ୟେ ଜନାଃ ସର୍ବ୍ବେ ସନ୍ତ୍ୟେଷାମୃତନିର୍ବୃତାଃ ॥

ଶ୍ରୀ ଶୁକ ଉବାଚ ।

ଏଥିଅନ୍ତରେ ଶୁଣ ରାୟେ । ନାଭିର ହୋଇଲା ତନୟେ ॥
ଯେତେ ଲକ୍ଷଣ ବିଷ୍ଣୁଠାରେ । ସକଳ ଅଛି ସେ କୁମରେ ॥
ଶାନ୍ତ ବୈରାଗ୍ୟ ଗୁଣ ଯେତେ । ଐଶ୍ୱର୍ଯ୍ୟ ଆଦି ଏ ସମସ୍ତେ ॥
ଅତି ସମୃଦ୍ଧି ବସୁଧନେ । ପାଳନ୍ତି ହୋଇ ପ୍ରତିଦିନେ ॥
ବଢ଼ଇ ସୁତ ଅନୁଦିନେ । ଶୁକ୍ଳପକ୍ଷର ଚନ୍ଦ୍ର ଯେସନେ ॥
ଅମାତ୍ୟ ପ୍ରିୟଜନ ଯେତେ । ଦେବତା ବ୍ରାହ୍ମଣ ସହିତେ ॥
ଅବନୀତଳେ ଯେତେ ଜନେ । ସାନନ୍ଦ ହେଲେ ସର୍ବ୍ବ ମନେ ॥
ତାହାର ବଳବୀର୍ଯ୍ୟ ଗୁଣ । ଅତି ଅଦ୍ଭୁତ ଯେ ଲକ୍ଷଣ ॥
ଦେଖି ତା ରୂପ ଯଉବନ । ପିତା ଋଷଭ ଦେଲେ ନାମ ॥
ପୂର୍ବ୍ବେ ତାହାର ସଙ୍ଗତରେ । ବିବାଦ କଲେ ପୁରନ୍ଦରେ । ୧୦ ।
ସେ ଭଗବାନ ଯୋଗେଶ୍ୱର । ଋଷଭ ନାମଟି ତାହାର ॥
ଆପଣା ମାୟା ଯୋଗବଳେ । ଇନ୍ଦ୍ରଙ୍କୁ ନିଧନ ସେ କଲେ ॥
ନାଭି ସେ କର୍ମମାନ ଦେଖି । ଲୋତକେ ପୂର୍ଣ୍ଣ କଲା ଆଖି ॥
ବିକଳେ ଗଦ ଗଦ ହୋଇ । ମନ୍ଦ ମଧୁରେ ସେ ବୋଲଇ ॥
ସେ ଭଗବାନ ଯୋଗେଶ୍ୱର । ପୁରାଣ ପୁରୁଷ ଠାକୁର ॥
ମାୟାର ଅଂଶେ ରୂପ ହୋଇ । ଯେ ଲୀଳା ଶରୀରେ ବହଇ ॥
ତାହାଙ୍କୁ ପ୍ରଣିଭିବ କରି । ବଦନେ ବଚନ ଉଚ୍ଚାରି ॥
ପ୍ରେମବିହ୍ୱଳେ ସେ ଭଜିଲା । ପରମସୁଖ ସେ ଲଭିଲା ॥

ଏଥୁ ଅନ୍ତରେ ନୃପମଣି । କୁମର ବୁଦ୍ଧି ବଳ ଜାଣି ॥
ଅଗ୍ନୀଧ୍ର ବ୍ରାହ୍ମଣଙ୍କୁ ବରି । ବଜାନ୍ତ ପଣ ପୁତ୍ରେ ଦେଇ ॥
ଯେ ମରୁଦେବୀ ପତ୍ନୀ ତାର । ସଙ୍ଗତେ ଘେନି ନୃପବର ।
ବିଶାଳ ନଗରେ ରହିଲା । ପରମ ତପ ଆଚରିଲା ॥
ସୁଦୃଢ଼ଭାବେ ସେ ରାଜନ । ଚିନ୍ତଇ ପ୍ରଭୁ ଭଗବାନ ॥
କେତେଦିନେହିଁ ବନ ତପ କଲା । ଅନ୍ତେ ସେ ମୁକତି ଲଭିଲା ॥
ତାହାର ଯେତେ ପୁଣ୍ୟ ନରେ । ଗାୟନ କରନ୍ତି ସଂସାରେ ॥
ଏମନ୍ତ ସଂସାରେ କେ ହେବ । ନାଭିର ପୁଣ୍ୟ ଆଚରିବ ॥
ଯାହାର ଶୁଦ୍ଧଭାବୁଁ ହରି । ପୁତ୍ର ହୋଇଲେ ନରହରି ।
ସେ ରାଜା ବଡ଼େ ଭକ୍ତ ବନ୍ଧୁ । ଯଜ୍ଞେ ପୂଜିଲା ଭବଗ୍ରାହୀ ॥
ଯଜ୍ଞରେ ପଦ୍ମ ଚକ୍ରଧର । ହୋଇଲେ ନୟନଗୋଚର ॥
ଏ ଅନନ୍ତରେ ନୃପ ଶୁଣ । ସେ ଯେ ଋଷଭ ଭଗବାନ ।୩୦।
ଗୁରୁକୁଳକୁ ବଶ କଲେ । ଲୋକରେ ଧର୍ମ ଦେଖାଇଲେ ।
ସମସ୍ତ ବିଦ୍ୟା ପୂର୍ଣ୍ଣ କରି । ଗୁରୁଙ୍କ ଆଜ୍ଞା ଶିରେ ଧରି ॥
ଗୃହସ୍ଥ ଧର୍ମ ଆଚରଣ । କରନ୍ତି ସଂସାର କାରଣ ॥
ଗୁରୁ ସନ୍ତୋଷେ ଦେଲେ ବର । ହୋଇବ ଶତେକ କୁମର ॥
ଏମନ୍ତେ ଗଲା କେତେ ଦିନ । ଋଷଭରୂପେ ଭଗବାନ ॥
ବେଦ ଉଦିତ କର୍ମମତେ । ବଜ୍ର ହୋଇଲେ ଯଥାଶତେ ॥
ପୂର୍ବରେ ଇନ୍ଦ୍ର ଦଇବତ । ଐଶ୍ୱର୍ଯ୍ୟ ଅଦ୍ଧ ଯେ ରହିତ ॥
ତହିଁ ବିବିଧ ଭୋଗ କରି । ଅନନ୍ତେ ସଂସାରେ ବିହରି ।
ଯଥାକାଳରେ ତାହାଙ୍କର । ହୋଇଲା ଶତେକ କୁମର ।
ଏହାଙ୍କ ମଧ୍ୟେ ମହାବୀର । ଶ୍ରେଷ୍ଠ ଯେ ଭରତ କୁମର ।୪୦।
ଏ ଭୂମି ଯାହାର ନାମରେ । ଭାରତ ହୋଇଲା ସଂସାରେ ।
ଏ ନବ ତାର ଯେ ଅନ୍ତରେ । ହୋଇଲେ ଋଷଭ କୁମରେ ॥
ଯେ ଇଳାବର୍ତ୍ତ କୁଶାବର୍ତ୍ତ । ଯେ ଇନ୍ଦ୍ରସ୍ପୃକ ବ୍ରହ୍ମାବର୍ତ୍ତ ॥
ମଳୟସେନ ଭଦ୍ରସେନ । ବିଦର୍ଭ କୀକଟ ପ୍ରଧାନ ।
ଏ ନବ ପୁତ୍ରଙ୍କ ଚରିତ । ପଛେ କହିବା ପରୀକ୍ଷିତ ॥
ଭରତ ଅନୁଜ ଯେ ନବ । ଶୁଣ କହିବା ରାଜଦେବ ॥

ଭ୍ରମିଳ ଯେ ପିପ୍ପଳାୟନ । ଦ୍ରବିଡ଼ ଅଟେ ହୋଇ ନାମ ॥
ଚମସ ଅନ୍ତରୀକ୍ଷ କବ । କରଭାଜନ ଅର ହବ ॥
ଏ ନବ ଶ୍ରେଷ୍ଠ ଭାଗବତ । ପବିତ୍ର କଲେ ଏ ଜଗତ ॥
ପୂର୍ବେ ବସୁଦେବ ନାରଦ । ଏ ଦୁହଙ୍କର ଯେ ସମ୍ବାଦ ।୫୦।
ସେଠାରେ ବର୍ଣ୍ଣିବା ସମସ୍ତ । ଶୁଣ ସୁଜନ ପଣ୍ଡିତ ॥
ଏକାଶୀ ପୁତ୍ରଙ୍କ ଚରିତ । ଶୁଣ କହିବା ଏକଚିତ୍ତ ॥
କ୍ଷୋଣୀସ୍ୟ ସୁଶୀଳ ମହାନ୍ତ । ପିତାର ଆଜ୍ଞାରେ ସେ ରତ ॥
ସାତ୍ତ୍ୱିକ କର୍ମରେ ନିପୁଣ । ସଂସାରେ ହୋଇଲେ ବ୍ରାହ୍ମଣ ॥
ଏ ଅନନ୍ତରେ ସେ ଈଶ୍ୱର । ଋଷଭ ନାମେ ଯୋଗେଶ୍ୱର ॥
ସେ ହତପ୍ୟ ଅବ୍ୟୟ ଅନନ୍ତ । ପରମାନନ୍ଦ ଯେ ନିବୃତ୍ତ ॥
ମାୟାଭାବକଲେ ଦେହ ଧରି । ଅନେକ କାଳ ସେ ବିହରି ॥
ଧର୍ମଆଚର ଶିକ୍ଷା ଗୁଣ । କରନ୍ତି ପ୍ରଜାପୁତ୍ରଙ୍କୁ ଦାନ ॥
ପରମ ଦୟାଳୁର ଗୁଣ । ସର୍ବଭୂତରେ ମିତ୍ରପଣ ॥
ସୁତପାଳନ୍ତି ପ୍ରଜାଜନ । ପୁତ୍ରଙ୍କୁ ପିତାହିଁ ଯେସନ ।୬୦।
ବେଦପ୍ରମାଣେ ମୁନିଗଣ । ଯେ ପଥ କରନ୍ତି ଦର୍ଶନ ॥
ସେହି ପ୍ରକାରେ ନୃପବର । ପାଳନ କରନ୍ତି ସଂସାର ॥
ଉତ୍ତମ କାଳେ ଶୁଦ୍ଧଜଳେ । ନାନା ଦ୍ରବ୍ୟରେ ସେ ନିଷ୍ଠଳେ ।
ଅତି ସମ୍ପତ୍ତି ଅନୁକ୍ରମେ । ଯଜ୍ଞ କରନ୍ତି ଶୁଦ୍ଧମନେ ॥
ଏମନ୍ତେ କଲେ ଯଜ୍ଞ ଶତ । ବେଦ ଉଦିତ ଯଥୋଚିତ ॥
ଋଷଭ ପାଳିଲେ ମହୀ । ଏମନ୍ତ କେ ଅବା ଅଛଇ ॥
ଦରିଦ୍ର ହିଂସା ଖଳ ଅଧ । ଅବିଦ୍ୟା ବଳନ୍ତି ଯେ ପ୍ରସିଦ୍ଧି ॥
ଦ୍ରବ୍ୟ ଯାଚନା ନ କରଇ । ଏମନ୍ତ ଜନ କେହି ନାହିଁ ॥
ଭକ୍ତି ପ୍ରସନ୍ନ ବନ୍ଦୁ ଅଛ । ଅନ୍ୟ ନ ବାଞ୍ଛନ୍ତି ସେ ନର ॥
ଏବେ ହୋ ଶୁଣ ସାବଧାନେ । ଋଷଭ ବୁଦ୍ଧି ଏକଦିନେ ॥
ବ୍ରହ୍ମାର ସଭାମଧ୍ୟେ ଯାଇଁ । ତନୟମାନେ ଛନ୍ତି ଯହିଁ ॥
କୋମଳ ମଧୁର ବଚନ । ଶିକ୍ଷା କରନ୍ତି ସେ ସୁଜନ ॥
କହନ୍ତି ହିତବାକ୍ୟମାନ । ଶୁଣନ୍ତି ଯେତେ ସଭାଜନ ॥
କହଇ ଜଗନ୍ନାଥ ଦାସ । ଋଷଭ ନାରାୟଣ ଅଂଶ ।୭୪।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଋଷଭ
ଦେବାନୁଚରିତେ ନାମ ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ ।

ପଞ୍ଚମେ ମୋକ୍ଷଧର୍ମୋପଦେଶୈଃ ପୁତ୍ରାନୁଶାସନଂ ।
ଉକ୍ତଂ ପାରମହଂସ୍ୟଞ୍ଚ ତସ୍ୟ ଦୁର୍ଦ୍ଧିତଲକ୍ଷ୍ୟା ॥

ଶ୍ରୀ ଭଗବାନୁବାଚ ।

ହେ ପୁତ୍ରମାନେ ସାବଧାନେ । ଶୁଣ ଯେ ଅମୃତ ବଚନେ ॥
ଯେ ପ୍ରାଣୀ କଷ୍ଟେ କର୍ମମାନ । ନର୍ଦ୍ଧରେ କରେ ଅଚରଣ ॥
ସେ ପ୍ରାଣୀ ବ୍ୟର୍ଥ ଏ ସଂସାରେ । ପଡ଼େ ନରକ ମହାଘୋରେ ॥
ଏ ବ୍ରହ୍ମ କର୍ମ ସତ୍ୟ ଗୁଣ । ତେଜେ ଅନନ୍ତ ଅଚ୍ଯଧନ ॥
ନିର୍ବାଣ ମାର୍ଗେ ଏ ବିହିତ । ଶୁଣ କହିବା ପୁତ୍ରେ ସତ୍ୟ ॥
ସ୍ତ୍ରୀ ସଂସଙ୍ଗମ ଆଦି ଯେତେ । ଏ ଘୋରତମ ଶାସ୍ତ୍ର ସୂଚିତ ॥
ଯେ ଅବା ସତ୍ୟ ଶାନ୍ତ ଚିତ୍ତେ । ପ୍ରଶାନ୍ତ ସାଧୁ ସେ ଜଗତେ ॥
ଯେ ଜନ କ୍ରୋଧ ବିବର୍ଜିତ । ତାହାର ସୁହୃଦ ଜଗତ ॥
ଯେ ପ୍ରାଣୀ ମୋର ପଦ୍ମପାଦେ । ମନ ଅର୍ପଇ ଅପ୍ରମାଦେ ॥
ତାବତ ଗୃହମେଧୁ ଧର୍ମ । ନ ହୁଇ ମାୟାରେ ସେ ଭ୍ରମଂ ।
ଯାବତ ମୋତେ ନ ଭଜଇ । ଭ୍ରମଇ ମାୟା ଭ୍ରମେ ସେହି ॥
ଅନିତ୍ୟ ଦେହ ନିତ୍ୟ କରେ । ସେ ସାଧୁ ନୁହଇ ସଂସାରେ ॥
ତାବତ ପରାଭବ ପାଇ । ଯାବତ ମୋତେ ନ ଚିହ୍ନଇ ॥
ଯାବତ ନାନା କର୍ମ କରେ । ମନ ବନ୍ଧଇ ନିରନ୍ତରେ ॥
ତେଣୁ ସେ କର୍ମବଶ ହୋଇ । ନାନା ଶରୀର ସେ ବହଇ ॥
ଅବ୍ୟୟ ବାସୁଦେବ ମୁହିଁ । ମୋହରେ ଯେବେ ସ୍ନେହ ବହି ॥
ସେ ହୋଏ ଗୃହ-ବନ୍ଧୁ ପାର । ଯେଣୁ ଚିହ୍ନଇ ସେ ଈଶ୍ୱର ॥
ସ୍ୱପ୍ନର ପ୍ରାୟେ ଦେହେଁ ନର । କରଇ ନାନା ଅହଂକାର ॥
ନିଦ୍ରାରେ ଯେହ୍ନେ ସୁଖ ଭୋଗ । ଜାଗ୍ରତ ପାଇ ଲାଭାଲାଭ ॥
ଗୃହ ବନ୍ଧନର କାରଣ । ନାନା ସଂଗତ ବନ୍ଧୁଜନ ।

ସ୍ତ୍ରୀ ପୁରୁଷ ଭାବ ହୋଇ । ତହିଁରେ ମନକୁ ବାନ୍ଧଇ ॥
ମୋହର ଗୃହ ମୋର ଧନ । ବୋଲେ ମାୟାରେ ହୋଇ ଛନ୍ନ ॥
ଯାବତ କର୍ମ ବନ୍ଧମାନ । ନୁହଇ ତାହାର ଖଣ୍ଡନ ॥
ଯାବତ ପାଦପଦ୍ମେ ଧ୍ୟାନ । ଅଭ୍ୟସ୍ତ ନ କରନ୍ତି ଜନ ॥
ପାଦପଙ୍କଜ କରେ ଧର । ତରନ୍ତି ଏ ଭବ-ଲହରୀ ॥
ଅଖିଳ ଗୁରୁ ମୁଁ ଯେ ହରି । ମୋତେ ଭଜିବେ ସ୍ନେହ କରି ॥
ନିବୃତ୍ତେ ତୁଷ୍ଟ ହୋଇ ନରେ । ଭକ୍ତି କରିବେ ମୋର ଠାରେ ॥
ବେଶ ବସନଙ୍କ ଛାଡ଼ିବେ । ଭକ୍ତିରେ ମୋତେ ଆରାଧିବେ ॥
ମୋହର ଗୁଣ କର୍ମମାନ । ନିରତେ କରିବେ କୀର୍ତ୍ତନ ॥
ଇନ୍ଦ୍ରିୟ ଗୁଣକୁ ନିବାରି । ଅଧ୍ୟାତ୍ମ୍ୟ ବିଦ୍ୟାକୁ ବିଚାରି ।୩୦।
ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟ କରିବେ । ପ୍ରଶାନ୍ତ ସତ୍ୟ ବଚନରେ ॥
ମୋହର ଭକ୍ତ ଅନୁକ୍ଷଣେ । ଚିତ୍ତେ ଅର୍ପଇ ଶୁଭକ୍ଷଣେ ॥
ଭବଜଳରୁ ସେ ତରଇ । ତାହାର ଗୃହବନ୍ଧ ଛାଡ଼ି ॥
କର୍ମ କରିବ ଯେ ସଂସାରେ । ଅର୍ପିବ ମୋହର ପଦ୍ମରେ ॥
ତାହାର କର୍ମବନ୍ଧ ମୁହିଁ । ଅକ୍ଳେଶେ ନିଶ୍ଚୟ ଛେଦଇ ॥
ଆତ୍ମାର ଶ୍ରେୟ କର୍ମଠାରେ । ଶ୍ରଦ୍ଧା ନ କରନ୍ତି ପାମରେ ॥
ଅଳପ ସୁଖେ ମୋଦ ଭରି । ଅନେକ ଦୈନ୍ୟ ହିଂସାକୁ ଆଚରି ॥
ଅଶେଷ ଦୁଃଖର କାରଣ । ହୁଅନ୍ତି ହୋଇ ମତିଭ୍ରମ ॥
ହୃଷ୍ଟ ତାହାର ତହିଁ ରହି । ଅବିଦ୍ୟା ସମୃଦ୍ଧ ଦେଖାଇ ॥
ଅନ୍ଧ ଯେସନେ ପଥେ ଥାଇ । କଣ୍ଟକ ଦୁର୍ଗମେ ଗମଇ ।୪୦।
ସେ ନୋହେ ଗୁରୁ ମିତ୍ରହିତା । ସୁହୃଦ ଜନ ଆତ୍ମା ମାତା ॥
ନିଶ୍ଚିତ ମୁକ୍ତି ନ ଲଭରେ । ଏମନ୍ତ ଅଛି ଏ ସଂସାରେ ॥
ମୂଢ଼ ଜାଣିବ ଅବା ତାହିଁ । ଅନିତ୍ୟ ମାୟାରେ ଭ୍ରମଇ ॥
ଭୋ ପୁଣି ଶୁଣ ମୋ ଉଦ୍ଧବ । ଏ ଯେ ମୋହର କଳେବର ॥
ଅଷ୍ଟାଙ୍ଗ ଯୋଗ ଧ୍ୟାନମତେ । ଗୁଣ ଚିନ୍ତନ୍ତି ଅବିରତେ ॥
ଯେଣୁ ଅମୂଳ ତୁମ୍ଭେ ସୁତ । ପରମ ଶ୍ରେଷ୍ଠ ଭାଗବତ ॥
ଏବେ ଏମନ୍ତ ତୁମ୍ଭେ କରି । ମନକୁ ସମର୍ପଣ ଧରି ॥
ଅକ୍ଳେଶ ବୁଦ୍ଧିରେ ସମସ୍ତେ । ମୋ ରୂପ ଭଜ ଯଥୋଚିତେ ॥

ମୋର ବଚନ ଧରି ଚିତ୍ତେ । ସୁଖେ ବିହର ଏ ଜଗତେ ॥
ସର୍ବଭୂତରେ ମୁହିଁ ଥାଇ । ସୁଖ ଦୁଃଖାଦି ମୁଁ ଭୁଞ୍ଜଇ ।୫୦।
ଭୂତ ଗନ୍ଧର୍ବ ଯେ ମାଧବ । ପ୍ରମଥଗଣ ମହାଦେବ ॥
ସେ ବ୍ରହ୍ମସୁତ ଦୈତ୍ୟ ଆଦି । ମୋର ଶରୀର ଏ ପ୍ରସିଦ୍ଧି ॥
ସର୍ବ ଦେବଙ୍କ ମଧ୍ୟେ ସାର । ସଂସାରେ ବିପ୍ର କଳେବର ॥
ଶ୍ରଦ୍ଧାରେ ଶୁଦ୍ଧମନେ ଯେହୁ । ଯେ ଦ୍ରବ୍ୟ ବିପ୍ରଙ୍କୁ ଦିଅଇ ॥
ସନ୍ତୋଷେ ଭକ୍ଷଇ ମୁଁ ତାହା । ଯଜ୍ଞେ ସନ୍ତୋଷ ନୋହେ ଯାହା ।
ଯମ ନିୟମ ଦମେ ମୋତେ । ପୂଜନ୍ତି ବିପ୍ରେ ଯଥୋଚିତେ ॥
ସକଳ ପଞ୍ଚଙ୍କର ପର । ମୁହିଁ ଅନନ୍ତ ଯେ ଈଶ୍ୱର ।
ସ୍ୱର୍ଗ ମୋକ୍ଷାଦି ଦାତା ମୁହିଁ । ମୋ ବିନୁ ଅନ୍ୟ କେହି ନାହିଁ ॥
ଯେ ପ୍ରାଣୀ ଅକିଞ୍ଚନ ଦେହୀ । ମୋହର ପାଦେ ମନ ଦେଇ ॥
ତାହାର ଯେତେ କର୍ମମାନ । ସକଳ କରଇ ଗ୍ରହଣ ।୬୦।
ମୋହର ପୂଜା ତୁମ୍ଭେମାନେ । କଲ ଯେ ଯଥାର୍ଥ ବିଧାନେ ॥
ସଂଶଛା ଅବଲୋକନରେ । ସ୍ଥିର ମନ ବାକ୍ୟ ବୁଦ୍ଧିରେ ॥
ମୋହର ଅନୁଗ୍ରହ ହେଲେ । ସଂସାରେ ପ୍ରାଣୀମାନେ ଭଲେ ॥
ଶମନ ପାଶ ବନ୍ଧନରୁ । ତରନ୍ତି ମହା ସଙ୍କଟରୁ ॥

ଶ୍ରୀ ଶୁକ ଉବାଚ ।

ଏମନ୍ତ ଶିକ୍ଷା ପୁତ୍ରେ ଦେଇ । ଋଷଭ ପ୍ରଭୁ ଭାବଗ୍ରାହୀ ॥
ପ୍ରାଣୀଙ୍କ ନିସ୍ତାର କାରଣ । ଧର୍ମ ବିସ୍ତାରିଲେ ଆପଣ ॥
ତନୟ ଶତ ମଧ୍ୟେ ସାର । ଶ୍ରେଷ୍ଠ ଯେ ଭରତ କୁମର ॥
ପରମ ଭାଗବତ ସେହୁ । ନିରତେ ପ୍ରଭୁଙ୍କୁ ଭଜଇ ॥
ସାଧୁ ସଙ୍ଗତେ ଅବିରତ । ତାହାଙ୍କ ଗୁଣ ଯେ ଅଦ୍ଭୁତ ॥
ଅବନୀପାଳନର ପାଇଁ । ରାଜଭୂଷଣ ତାଙ୍କୁ ଦେଇ ।୭୦।
ଯେ ମୁକ୍ତିଧର୍ମ ମହାମନ୍ତ୍ର । ଜ୍ଞାନ ବିଜ୍ଞାନେ ଭକ୍ତି ଯୋଗ ॥
ତାହାଙ୍କ ଲକ୍ଷଣ ଆଚରି । ଋଷଭ ପ୍ରଭୁ ନରହରି ॥
ବାହ୍ୟେ ଶରୀର ମାତ୍ର ଧରି । ଉନ୍ମତ୍ତ ଭାବକୁ ଆଚରି ॥
ପ୍ରକୀର୍ଣ୍ଣ କରି କେଶବାସ । ଗଗନ କରି କଟୀଦେଶ ॥
ଯେସନେ ବଧିର ଜଡ଼ ମୂକ । ଅନ୍ଧ ପିଶାଚ ଉନ୍ମାଦକ ॥

ଏମନ୍ତେ ଅବଧୂତ ବେଶ । ଧରି ସେ ବ୍ରହ୍ମାଣ୍ଡର ଈଶ ॥
ପ୍ରାଣୀଙ୍କି ବଚନ ନ କହ୍ନ । ମୌନବ୍ରତକୁ ସେ ଧେନଇ ॥
ସକଳ ପୁର ଗ୍ରାମ ଗିରି । ପୁର କାନନ ଅଦ୍ରି କରି ॥
ଦୁର୍ଜ୍ଜନ ଦୁଷ୍ଟଙ୍କ ବଚନ । ଗଞ୍ଜଣ ଆଦ ଯେ ମଜନ ॥
ଏ ପରାଭବକୁ ଯେ ସେହ୍ନ । ସୁଖେ ଭ୍ରମନ୍ତି ଏକା ମଣି । ୮୦ ।
ଅପଣାଠାରେ ମନ ଦେଇ । ନିତ୍ୟ ଆନନ୍ଦମନା ହୋଇ ॥
ଅତି କୋମଳ ସୁକୁମାର । ଚରଣଯୁଗ ବେନି କର ॥
ବିପୁଳ ଉଚ୍ଚ ବକ୍ଷସ୍ଥଳ । ମଞ୍ଜୁଳ ବଦନ-କମଳ ॥
ଅତି ସୁନ୍ଦର ସେ ଶରୀର । ଈଷତ ହାସ୍ୟ ବିମ୍ବାଧର ॥
ନବ-ନଳିନ ଦଳ ଯେସନେ । ଲୋଚନ ଯୁଗଳ ତେସନେ ॥
ସୁବର୍ଣ୍ଣ ସୁପକ୍ୱ କପୋଳ । ନିଗୂଢ଼ କର୍ଣ୍ଣ ଯେ ମଞ୍ଜୁଳ ॥
ସେ ରୂପ ଦେଖିଣ ନୟନେ । ଭୁଲେ ସେ ସୁରପତ୍ନୀମାନେ ॥
କୁସୁମ-ଗନ୍ଧ ବାସେ ମନ । ତକ୍ଷଣେ ହୋଇ ଛନ ଛନ ॥
ଯେ ବ୍ରତ ଅତି ଭୟଙ୍କର । ଅଜଗରଙ୍କ ଯେ ଆଚାର ॥
ସେ ଅଜଗର ପ୍ରାପ୍ତ ହୋଇ । ରହିଲେ ନିଜ ରୂପ ଧ୍ୟାୟି । ୯୦ ।
ଏମନ୍ତେ କହିବଇଁ ତୋତେ । ଅଷ୍ଟାଙ୍ଗ ଯୋଗ ନାନାମତେ ॥
କଟି ସେ କୈବଲ୍ୟଦାତା । ଯେ ପ୍ରଭୁ ଯୋଗ ଇଷ୍ଟ ପିତା ॥
ଏମନ୍ତେ ନାନାଯୋଗ ଚିନ୍ତ । ସେ ହରି ଭକତିର ଗତି ॥
ସକଳ ଅସ୍ୱାଭୂତେ ଯେହ୍ନ । ଋଷଭ ଅଂଶେ ଦେହ ବହ୍ନି ॥
ପରମ ପ୍ରଭୁ ଯୋଗେଶ୍ୱର । ଯୋଗ ସାଧିଲେ ଯେ ଅପାର ॥
ସେ ପ୍ରଭୁଚରଣେ ମୋ ଚିତ୍ତ । ନିଶ୍ଚଳ ରହୁ ଅବିରତ ॥
କହଇ ବିପ୍ର ଜଗନ୍ନାଥ । ଜନ ନିସ୍ତାରେ ଭାଗବତ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଋଷଭ-
ବଜ୍ରପୁଷ୍ଟ ଧର୍ମାଚରଣେ ନାମ ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ ।

ଷଷ୍ଠେ ଲୀନାଭିମାନସ୍ୟ ଦେହତ୍ୟାଗକ୍ରମାଭିଧା ।
ପ୍ରଦହନ୍ତଂ ଦାବାଗ୍ନିଂ ଯଃ ପଶ୍ୟନ୍ନପି ନ ପଶ୍ୟତି ॥

ଶ୍ରୀ ଶୁକ ଉବାଚ ।

ଯେ ସର୍ବଭୂତେ ଆତ୍ମାଧୀନ । ଋଷଭ ଅଂଶେ ଅବତାର ॥
ଯାହାର ନାମ ଯୋଗେଶ୍ବର । ଯୋଗ ସାଧିଲେ ଯେ ଅପାର ॥

ରାଜୋବାଚ ।

ମୋର ସଂଶୟ ହୃଦଗତେ । ହେ ମୁନି କହ ତୋଷଚିତ୍ତେ ॥
ଯେଉଁ ଆତ୍ମାରାମ ପୁରୁଷ । ସକଳ କର୍ମର ଯେ ଈଶ ॥
ଏରୂପେ କବା କାର୍ଯ୍ୟ ତାର । ସଂଶୟ ଫେଡ଼ ମୁନିବର ॥
ଅଷ୍ଟ ଐଶ୍ବର୍ଯ୍ୟଦାତା ହୋଇ । ଏତେ କ୍ଲେଶ ଯେ କାହିଁପାଇଁ ॥

ଶ୍ରୀ ଶୁକ ଉବାଚ ।

ଯେ ପ୍ରଶ୍ନ କଲ ହେ ରାଜନ । କହିବି ଶୁଣ ସାବଧାନ ॥
ଐଶ୍ବର୍ଯ୍ୟ ଆଦି ଧନ ଯେତେ । ନିତ୍ୟ କଦର୍ଯ୍ୟ ମହାପତେ ॥
ଯାହାର ମୂଳ କେଉଁ ଜ୍ଞାନ । ଶୋକ ହରଷ ଆଦି କାମ ॥
ଏ ସର୍ବ ଯାର ମୂଳ ହୋଇ । ପ୍ରାଣୀଙ୍କ ବନ୍ଧନ କରଇ । ୧୦ ।
କେ ଏହା ଧାଧ୍ୟ କରୁ ମନେ । ମୃଢ ପାମର ସ୍ଥାନଜନେ ॥
ଏବେ ହେ ଶୁଣ ମହୀପାଳ । ରାଜା ଋଷଭ ମହାବଳ ॥
ଯାର ଅଖିଳ ଲୋକପାଳ । ବନ୍ଦନ୍ତି ଚରଣଯୁଗଳ ॥
ସେ ଦେବ ନାନାବିଧ ଲକ୍ଷଣେ । ଜଡ଼ର ପ୍ରାୟ ଆଚରଣେ ॥
ଭ୍ରମନ୍ତି ନାନା ଦେଶ ଗ୍ରାମ । ଯୋଗ ଶିଖାଇ ଯୋଗିଗଣ ॥
ଏମନ୍ତେ ଗଲା କେତେଦିନ । ଶୁଣ ରାଜନ ଏକମନ ॥
ଋଷଭ ମନେ ବିଗ୍ଭରିଲେ । ଏ ଦେହ ଛାଡ଼ିବି ବୋଇଲେ ॥
ଆତ୍ମାରେ ମନକୁ ବୁଡ଼ାଇ । ନିଶ୍ଚଳ ଧ୍ୟାନେ ମନ ଦେଇ ॥
ଏମନ୍ତେ ମୁକ୍ତଫଳରୂପ । ହୋଇ ସେ ଈଶ୍ବର ସ୍ବରୂପ ॥
ମୁଖରେ ପ୍ରାୟ ଦେହ ମନ । ଛଳ୍ପା ଭିତରେ ମହାଜ୍ଞାନ ।୨୦ ।
ଦକ୍ଷିଣ କର୍ଣ୍ଣାଟ ସନ୍ନିଧେ । କୋଙ୍କଟ କୁଟକ ନଗର ॥
ତହିଁର ଉପବନେ ସେହି । ବୁଲନ୍ତି ମୁକ୍ତକେଶ ହୋଇ ॥
ଏମନ୍ତେ ପବନ ବେଗରେ । ଅଗ୍ନି ଜଳିଲା ଅତି ଖରେ ॥
ବନସ୍ତ ଜୀବ ବୃକ୍ଷମାନ । ଶୀଘ୍ର ଯେ କରଇ ଦହନ ॥
ସେ ଜଡ଼ରୂପ ଯୋଗେଶ୍ବର । ପଶିଲେ ଅଗ୍ନିର ଭିତର ॥

ପବନ ବେଗେ ଅଗ୍ନି ଝଟେ । ଦହିଲା ତାହାଙ୍କ ଶରୀରେ ॥
ପାଷଣ୍ଡପଣ ଯେଣୁ ହୋଇ । କୁପଥମାନ ସେ ଲଭଇ ॥
କଳିଯୁଗରେ ନରନାଥ । ହୋଇବେ ମାୟାବିମୋହିତ ॥
ଶୌଚ ପବିତ୍ର ଦୂର କରି । ଦେବତା ନିନ୍ଦା ସେ ଆଚରି ॥
କଳିର ଅଗ୍ରର ଯେପନ । ତହିଁରେ ହୋଇ ମତିଭ୍ରମ ।୩୦।
ଦେବ ବ୍ରାହ୍ମଣ ଯଜ୍ଞମାନ । ନିନ୍ଦା କରିବେ ଅନୁକ୍ଷଣ ॥
ସୁପଥ କର୍ମ ଯେ ଛାଡ଼ିବେ । କୁମାର୍ଗ ପଥ ଆଚରିବେ ॥
କହିବା ଶୁଣ ନୃପବର । ଏ ଯେ ଋଷଭ ଅବତାର ॥
ରଜସଗୁଣରେ ଏ ଯୁକ୍ତ । ଭକତି କଲେ ଯେ ବିଖ୍ୟାତ ॥
ଯାହାର ଗୁଣ ଏ ସଂସାରେ । ଗାୟନ କରି ସାଧୁଜନେ ॥
ସପ୍ତ ସିନ୍ଧୁ ଆଦି କରି । ଅବର ଯେତେ ବସୁନ୍ଧରୀ ॥
ଦ୍ୱୀପ ବର୍ଷ ଭଦ୍ରସେନ । ଯହିଁ ଏ ଜନ୍ମ ପ୍ରାଣୀମାନ ॥
ଅଖିଳଜନ ଯେ ଠାକୁର । ତାହାଙ୍କ ଜନ୍ମ ଅବତାର ॥
ଗାୟନ କରନ୍ତି ହରଷେ । ଯେ ବା ଅଜ୍ଞାନ ପାପନାଶେ ॥
ଧନ୍ୟ ସେ ପ୍ରିୟବ୍ରତ ବଂଶ । ଯହିଁ ଜନ୍ମିଲେ ବିଷ୍ଣୁ ଅଂଶ ।୪୦।
ଧନ୍ୟ ସେ ରାଜାମଧ୍ୟ ଶ୍ରେଷ୍ଠ । ଭକ୍ତମଧ୍ୟରେ ସେ ଗରିଷ୍ଠ ॥
ଏହାର ତୁଲ୍ୟ କେ ଆଚରି । ଯେ ବଂଶେ ବିଷ୍ଣୁ ଅବତରି ॥
ଦେବ ବ୍ରାହ୍ମଣ ଗୋରୁ ଆଦି । ଦେବତା ନର ଯେ ପ୍ରସିଦ୍ଧି ॥
ସେ ସର୍ବ ଗୁରୁ ଭଗବାନ । ଋଷଭ ପରମକାରଣ ॥
ତାହାଙ୍କ ଅଦ୍ଭୁତ କରମ । ବିଶୁଦ୍ଧ ଯେତେ ଆଚରଣ ॥
ପ୍ରାଣୀମାନଙ୍କ ପାପ ହରେ । ପରମ ମଙ୍ଗଳ ନନ୍ଦରେ ॥
ଶ୍ରଦ୍ଧାରେ ଶୁଣନ୍ତି ଯେ ନରେ । ହରଷେ ଗାବନ୍ତି ସୁସ୍ୱରେ ॥
ଚଞ୍ଚଳ ମନ ସ୍ଥିର କରି । ଯେ ଅବା ବଦନେ ଉଚ୍ଚାରି ॥
ବିଷୟତାପେ ବୁଡ଼ି ଥାଇ । ଭକ୍ତିଭେଳାରେ ସେ ତରଇ ॥
ପୁରୁଷୋତ୍ତମଙ୍କୁ ସେ ପାଇ । ଯାର ପ୍ରସାଦୁଁ ରକ୍ଷା ହୋଇ ।୫୦।
ଶୁଣ କହିବା ନୃପବର । ଯେ ଯଦୁବଂଶର ଠାକୁର ॥
ତାହାର ଭୃତ୍ୟ ତୁ ସୁଜନ । ସେ ଯେ ଅନାଦି ଭଗବାନ ॥
ନାନା ଅବତାରକୁ ବହି । ସଂସାର ପ୍ରାଣୀଙ୍କି ତାରଇ ॥

ଭକ୍ତିରେ ତାଙ୍କୁ ଯେ ଭଜଇ । ସେ ପ୍ରଭୁ ତାକୁ ମୋକ୍ଷ ଦେଇ ॥
ଯେ ନିତ୍ୟ ଆନନ୍ଦ ଶରୀର । ଯାହାର କୃଷ୍ଣମତି ଦୂର ॥
ପରମକଲ୍ୟାଣ କାରଣ । ପରଲୋକର ପରିପୂର୍ଣ୍ଣ ॥
ସେ ଯେ ଋଷଭ ସ୍ୱାମୀଙ୍କର । ତାହାଙ୍କୁ ମୋର ନମସ୍କାର ॥
କହଇ ବିପ୍ର ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭଗବତ ॥
ସେ ପ୍ରଭୁ ଋଷଭଚରଣେ । ମନ ମୋ ରହୁ ଅନୁକ୍ଷଣେ ।୫୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଋଷଭ-
ଦେବାନୁଚରିତେ ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ ।

ଅଧ୍ୟାୟାନାଂ ଚତୁର୍ଣେଣୈବ ମୃଷଭାଖ୍ୟାନମୀରିତଂ ।
ଅଷ୍ଟଭିର୍ଭରତାଖ୍ୟାନମତଃ ପ୍ରସ୍ତୂୟତେଽଦ୍ଭୁତଂ ॥
ସପ୍ତମେ ଭରତୋ ରାଜ୍ୟ କୃତଂ ଯଜ୍ଞୈ ର୍ହରିଂ ଯଜନ୍ ।
ଅବଦ୍ଧ କର୍ମ୍ମ ନିର୍ବାଣେ ହରିକ୍ଷେତ୍ରେଽଭଜଦ୍ଧରିଂ ॥

ଶ୍ରୀ ଶୁକ ଉବାଚ ।

ଭରତ ମହାଭାଗ୍ୟବନ୍ତ । ଋଷଭେ ହୋଇଣ ସମ୍ଭୂତ ॥
ତାହାଙ୍କ ଆଜ୍ଞା ଶିରେ ଘେନ । ଆନନ୍ଦେ ପାଳନ୍ତି ଅବନୀ ॥
ବିଶ୍ୱରୂପାର କନ୍ୟା ଯେହୁ । ବେଦ ବିହିତେ ଭାର୍ଯ୍ୟା ହୋଇ ॥
ପଞ୍ଚକ୍ରମରେ ତା ଉଦରେ । ହୋଇଲେ ଅତି ମନୋହରେ ॥
ଧୂମ୍ରକେତୁ ଯେ ସୁଦର୍ଶନ । ସୁମତି ରାଷ୍ଟ୍ରଭୃତ ନାମ ॥
ଅପରେ ଆବରଣ ନାମ । ହୋଇଲେ ଅତି ଅନୁପମ ॥
ଏମନ୍ତେ ଶୁଣ ପରୀକ୍ଷିତ । ବିଷ୍ଣୁର ଭକ୍ତ ସେ ଭରତ ॥
ବେଦ ପ୍ରମାଣେ ପ୍ରଜାଜନ । ସମ୍ମୁଖେ କରଇ ପାଳନ ॥
ଯେ ଯାହା କର୍ମ ବିନୁ ନର । ଅନ୍ୟ ନ କରନ୍ତି ଅସ୍ତର ॥
ଯେ ଦର୍ଶ ପୂର୍ଣ୍ଣ ମାଧ ଅଢ । ଚାତୁରମାସେ ଯେ ପ୍ରସିଦ୍ଧି ॥
ଯେ ଅଗ୍ନିହୋତ୍ର ପୂର୍ଣ୍ଣମାସ । ଦଶ ସୋମ ଯେ ଚାତୁର୍ମାସ୍ୟ ॥
ଏ ଅଢ ଯେତେ ଯଜ୍ଞମାନ । ବିଧିରେ କର ସମାପନ ॥

ପ୍ରକୃତ ବିକୃତ ଯେ କର । କରନ୍ତି ଯେ ନୃପକେଶରୀ ॥
ଯଜ୍ଞେ ସକଳ ଦେବ ତୋଷି । ଯେ ଯାହାମତେ ରାଜଋଷି ॥
ନାନା ଯଜ୍ଞରେ ସେ ଯଜନ । ସ୍ୱତନ୍ତ୍ରେ ପୂଜ ଭଗବାନ ॥
ଯେ ଦେବ ସର୍ବମୂଳ ଦେହୀ । ଅଶେଷ ଦେହୁ ଭାବଗ୍ରାହୀ ॥
ଅଖିଳ ଦେବଙ୍କର ପର । ସକଳ ବ୍ରହ୍ମାଣ୍ଡ ଠାକୁର ॥
ତାହାଙ୍କ ଚରଣାରବିନ୍ଦେ । ମନ କରନ୍ତି ଅପ୍ରମାଦେ ॥
ସକଳ ଯଜ୍ଞ ଅବସାନେ । ଦେବେ ସନ୍ତୋଷ ହେଲେ ମନେ ।
ପରମ କଲ୍ୟାଣ ସେ କରି । ହରଷେ ଗଲେ ଯେଝା ପୁରୀ ।୨୦।
ସ୍ୱକର୍ମ ପ୍ରମାଦୁଁ ରାଜାର । ନିର୍ମଳ ହୋଇଲା ଶରୀର ॥
ସତ୍ୟଗୁଣରେ ନୃପମଣି । ଏମନ୍ତେ ଜାନ୍ତି ଚକ୍ରପାଣି ॥
ଅକାଶ ପ୍ରାୟ ସେ ଶରୀର । ଶୁଦ୍ଧ ନିର୍ମଳ ନିତ୍ୟସାର ॥
ପରମବ୍ରହ୍ମ ବାସୁଦେବ । ଅନାଦି ପୁରୁଷ ମାଧବ ॥
ନାନା ଲକ୍ଷଣେ ବିରାଜିତ । ଚତୁରଭୁଜ ଅବିରତ ॥
ଶ୍ରୀବତ୍ସ କଉସ୍ତୁଭମଣି । ଗଦା କମଳ ଚକ୍ରପାଣି ॥
ଶଙ୍ଖ ଶୋଭିତ ଏକ କରେ । ବନମାଳାଏ ଲମ୍ବେ ଉରେ ॥
ଏ ଆଦି ଯେତେ ନାନା ଚିହ୍ନ । ଅବନୀ କରନ୍ତି ପାଳନ ॥
ସକଳ କର୍ମ ସାଧ୍ୟ କଲେ । ପୁତ୍ରଙ୍କୁ ରାଇ ଅଜ୍ଞା ଦେଲେ ॥
ନାନା ସମ୍ପଦ ଯଥୋଚିତେ । ବିଭାଗ କରି ଯେଝାମତେ ।୩୦।
ଦେଇ ସେ ଋଷଭ କୁମର । ଅପଣେ ହୋଇଲେ ବାହାର ॥
ପୁଲହ ମୁନିଙ୍କ ଆଶ୍ରମ । ତହିଁକି କଲେ ସେ ଗମନ ॥
ଅଦ୍ୟାପି ଭଜ ଭଗବାନ । ଯହିଁ ଅଛନ୍ତି କରି ସ୍ଥାନ ॥
ତାହାର ମହାନଦୀ ନାମ । ସ୍ମରଣେ ପାପ ବିନାଶନ ॥
ପୁଲହାଶ୍ରମ ଉପବନେ । ବିବିଧ ବିଟପି-ଗହନେ ॥
ନାନା କୁସୁମ ପରିମଳ । ନିର୍ମଳ ସୁଶୀତଳ ଜଳ ॥
ମନ୍ଦ ପବନ ଅବିରତେ । ତହିଁ ଭରତ ଶୁଦ୍ଧଚିତ୍ତେ ॥
କୋମଳ ତୁଳସୀର ଦଳ । ଶୀତଳ ଜଳ ଫଳ ମୂଳ ॥
ଅନ୍ୟ ଯେ ବନ ଉପହାରେ । ନିବେଶି ଗୋବିନ୍ଦପଦ୍ମରେ ॥
ଇନ୍ଦ୍ରିୟଗଣଙ୍କୁ ନିବାରି । ବିଷୟାରସ ଦୂର କରି ।୪୦।

ନିତ୍ୟ ଗୋବିନ୍ଦ ଆରାଧନ । କରଇ ହରଷେ ସଜ୍ଜନ ॥
ମହାପୁରୁଷ ସେବା ବିନେ । ଅନ୍ୟ ନ ଭାବଇ ସେ ମନେ ॥
ଭଜଇ ପ୍ରଭୁ ନାରାୟଣେ । ଶ୍ରଦ୍ଧା କରଇ ଅନୁକ୍ଷଣେ ॥
ପ୍ରେମ ପୁଲକ ଅଶ୍ରୁପାତ । ହରଷ ହୋଏ ଅବିରତ ॥
ଏମନ୍ତେ ବନ୍ଧୁ ଯେ ଗୋବିନ୍ଦ । ତାହାଙ୍କ ଚରଣ ରବିନ୍ଦ ॥
ସୂର୍ଯ୍ୟମଣ୍ଡଳେ ସେ ରାଜନ । ବ୍ରହ୍ମରୂପଙ୍କୁ କରି ଧ୍ୟାନ ॥
ଏମନ୍ତ ବାକ୍ୟ ଅନୁମାନେ । କହଇ ହରଷିତ ମନେ ॥
ଯେ ପଶ୍ଚାପର ବ୍ରହ୍ମରୂପ । ତାଙ୍କୁ ଚିନ୍ତନ୍ତି ନିତ୍ୟ ନୃପ ॥
ଭକ୍ତଙ୍କ କର୍ମ ଅନୁସରି । ସୂର୍ଯ୍ୟଦେବଙ୍କୁ ହୃଦେ ଧରି ॥
ସେ ପ୍ରଭୁ ଚରଣାରବିନ୍ଦେ । ମନ ନିବେଶି ଅପ୍ରମାଦେ ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ । ୫୨ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭରତ-
ତପସ୍ୟାଗମନେ ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ ।

ଅଷ୍ଟମେ ଭଜତୋ ବିଷ୍ଣୁଂ ତସ୍ୟ କର୍ମାନ୍ତରାୟତଃ ।
ଏଣରକ୍ଷାପ୍ରସକ୍ତସ୍ୟ ଜାତମେଣତ୍ୱ ନୀର୍ଯ୍ୟତେ ॥
କୃପୟାପି କୃତଃ ସଙ୍ଗଃ ପତନାୟୈବ ଯୋଗିନଃ ।
ଇତି ପ୍ରଦର୍ଶ୍ୟିତୁମାହ ଭରତସ୍ୟେଣପୋଷଣଂ ॥

ଶ୍ରୀ ଶୁକ ଉବାଚ ।

ଶୁଣ ସଜ୍ଜନ ସାବଧାନେ । ମହାନଦୀରେ ଏକଦିନେ ॥
ସ୍ନାନାଦି ନିତ୍ୟକର୍ମ ସାରି । ଭରତ ଗୋବିନ୍ଦ ସୁମରି ॥
ମୁହୂର୍ତ୍ତେ ଶୀତଜଳେ ରହି । ଏକାନ୍ତେ ବିଷ୍ଣୁଙ୍କୁ ଭଜଇ ॥
ସେ ଜଳେ ରହି ମହୀପାଳ । ହରିଣୀ ହୋଇ ତୃଷାକୁଳ ॥
ମିଳିଲା ଜଳାଶୟତଟରେ । ଜଳ ପିଅଇ ସେ ସଧୀରେ ॥
ଏମନ୍ତ ସମୟେ ରାଜନ । ଦେଖି ହରିଣୀ ଭୟେ ଛନ୍ନ ॥
ଗର୍ଜିଲ ମୃଗେନ୍ଦ୍ର ଉଚ୍ଚରେ । ପଳାଇ ଅତି ଦୁରନ୍ତରେ ॥

ଲୋକେ ଫୁଛିଲେ ଯେଉଁ କ୍ଷଣେ । ସ୍ୱରେ ରହିଲା ଯେ ଯେ ବନେ ॥
ସେ ମୃଗବଧୂ ଯେ ଗର୍ଭିଣୀ । ଜଳ ପିଅନ୍ତେ ଛନ୍ନ ଧ୍ୱଣି ॥
ଜଳପାନରେ ତୃଷା ତାର । ପୂର୍ଣ୍ଣ ନୋହିଲା ନୃପବର ॥
ଶୁଣି ଡରରେ ସେ ନୟନ । ବୁଲାଏ ଅତି ଘନ ଘନ ॥
ଡେଇଁ ଉଠିଲା ଧାଡ଼କାରେ । ଡେଇଁଲା ମରଣକାତରେ ॥
ସ୍ୱଭାବେ ଗର୍ଭ ହୋଇଥିଲା । ସେ ଗର୍ଭ ଜଳରେ ପଡ଼ିଲା ॥
ଗର୍ଭ ନିପାତେ ଖେଦମତି । ପ୍ରାଣ ତେଜିଲା ମୃଗସତୀ ।
ନଦୀରେ ପାଇ ମୃଗବାଳ । ସେ ଯେ ଭରତ ମହୀପାଳ ॥
ମାତାର ମୃତ୍ୟୁ ତାର ଦେଖି । ଦୟାରେ ଅଶ୍ରୁ ପୂର୍ଣ୍ଣ ଅକ୍ଷି ॥
ମୃଗନନ୍ଦନ ଘେନି ତୀରେ । ଆଶ୍ରମେ ମିଳିଲେ ତତ୍ପରେ ।
ସେ ମୃଗନନ୍ଦନର ତହିଁ । ଅତ୍ୟନ୍ତ ସ୍ନେହଭର ହୋଇ ॥
ନିତ୍ୟେ କୋମଳ ତୃଣାଙ୍କୁର । ଲେଢ଼ି ଆଣଇ ନୃପବର ॥
ଯାହା ସେ କରେ ଅଭିଳାଷେ । ତାହା ଦିଅଇ ମନତୋଷେ ॥
ତା ସେବା ନିତ୍ୟେ କରଇ । ମାୟାରେ ମତିଭ୍ରମ ହୋଇ ।
ନିୟମ ଶ୍ରଦ୍ଧା ଆଦି ଯେତେ । ବିସ୍ମୃତ ହେଲା ରଜା ଚିତ୍ତେ ॥
କେତେହେଁ ଦିନର ଅନ୍ତରେ । ପ୍ରଭୁର ସେବା କଲା ଦୂରେ ।
ଦେଖ ଏହାର ମୂଢ଼ମନ । ମୃଗବାଳକେ ହତଜ୍ଞାନ ॥
ସକଳ କର୍ମ ଦୂର କଲା । ମୃଗରେ ଚିତ୍ତ ନିବେଶିଲା ॥
ଜଗତ ପିତା ମାତା ହରି । ତାଙ୍କ ଚରଣେ ଚିତ୍ତ ଧରି ॥
ଦାର ତନୟ ଆଦି ଯେତେ । ସକଳ ଦୂର କରି ଚିତ୍ତେ ॥
ଏ ଭାବେ ଥାଇ ନୃପବର । ସକଳ କର୍ମ କଲା ଦୂର ॥
ଅସାଧୁ ସଙ୍ଗ ଅକାରଣ । ଏବେ ତୁ ଶୁଣ ହୋ ରାଜନ ॥
ଅସନ ଶୟନ ଗମନେ । ସ୍ନାନ ଭୋଜନ ଜଳପାନେ ॥
ମୃଗବାଳକେ ମନ ତାର । ନିମିଷ ମାତ୍ର ନୋହେ ଦୂର ॥
କାଷ୍ଠ ଦର୍ଭ ଆଣିବାରେ । ଯେବେ ସେ ଯାଇ ବନଦୂରେ ॥
ମୃଗବାଳକ ଘେନି ସଙ୍ଗେ । ପଥେ ଚଳଇ ନାନାରଙ୍ଗେ ॥
ବାଳକ ଚାଲି ନ ପାରଇ । କାନ୍ଧେ ତାହାକୁ ପୁଣ ବହି ॥
ହୃଦରେ ଅବେପି ହରଷେ । ବାହୁରେ ଭିଡ଼େ ସ୍ନେହବଶେ ॥

ସ୍ନାନ ଭୋଜନବେଳେ ତାର । ନିମିଷ ମାତ୍ର ନୋହେ ଦୂର ॥
ଏଥିଁ ଅନ୍ତରେ କଛଦିନେ । ମୃଗବାଳକ ଗଲା ବନେ ॥
ସେ ଅବସାନେ ନୃପବର । ଦେଖିଣ ମୃଗର କୁମର ॥
ଚଞ୍ଚଳ ଚିତ୍ତ ସ୍ଥିର କରେ । ଅଶ୍ୱାସି ହୁଅଇ ଆତ୍ମାରେ ॥
ହେ ବତ୍ସ ତୋହର କଲ୍ୟାଣ । ସର୍ବଦା କରୁ ନାରାୟଣ ॥
ଯେବେ ନିମିଷେ ନ ଦେଖଇ । ଶୋକ ସାଗରେ ସେ ବୁଡ଼ଇ ॥
କୃପଣ ଦ୍ରବ୍ୟକୁ ଯେସନ । ଚଉର୍ଯ୍ୟ କରି ନେଇ ଆନ ॥
ଏମନ୍ତ ପ୍ରାୟ ମହୀପାଳ । କ୍ଷଣେ ନ ଦେଖି ମୃଗବାଳ ॥
ଭ୍ରମେ କହଇ ବାକ୍ୟମାନ । ମଲା କି ମୃଗର ନନ୍ଦନ ॥
କି କର୍ମ କଲି ମୁଁ କୁବ୍ରତ । କେଉଁଣେ ଗଲା ମୋ ମୃଗସୁତ ॥
ମୃଗବାଳକ ସୁକଲ୍ୟାଣେ । ଚରୁଥିବ କି ଉପବନେ ॥
ବ୍ୟାଘ୍ର କି ଭକ୍ଷିଥିବେ ତାରେ । ଦେଖିବି ନୟନ ଗୋଚରେ ॥
ରବିର ଅସ୍ତକାଳ ହୋଇ । କେବେହେଁ ବାଳମୃଗ ନାହିଁ ॥
ଶୋକେ ଅକୁଳ ମୋର ଦେହ । ସେମୋତେତ ଯେବେ ଦେଖାଦେଇ
ସେ ଯେଉଁ ମୃଗର କୁମର । ମନୋଜ୍ଞ ଗମନ ତାହାର । ୫୦ ।
ତେତେଣେ ଆଶ୍ରମୀ ଲୋକଙ୍କର । ଦୁଃଖ ଖଣ୍ଡିବ ନିରନ୍ତର ॥
ମିଥ୍ୟାରେ ଚକ୍ଷୁ ବୁଜି ମୁହିଁ । କ୍ଷଣମାତ୍ରକ ଯେବେ ରହି ॥
କଙ୍କର ପ୍ରାମ୍ଭେକ ସେ ହୋଇ । ମୋର ଅଗ୍ରତେ ସେ ଲୋଟଇ ॥
ଋଷିକୁମରଙ୍କର ସଙ୍ଗେ । ଖେଳୁ ସେ ଥାଇ ନାନାରଙ୍ଗେ ॥
କୋମଳ ତୃଣ ଘାସମାନ । ବାଳକେ ହୁଅନ୍ତି ବନ୍ଧନ ॥
ସେ ସର୍ବ ସୁଖ କେଉଁଣ ଗଲା । ମୃଗବାଳକ କେଉଁଣେ ମଲା ॥
ଅତ୍ୟନ୍ତ ଦୁଃଖ ମୋତେ ଦେଇ । ତା ବିନୁ ମୋର କେହି ନାହିଁ ॥
ଏ ଯେ ଅଶ୍ରମ ମୁନିଗଣ । କରନ୍ତି ନାନା ଶୁଭକର୍ମ ॥
ହରଷେ ସେ ଯେ ମୁନିଗଣ । କରନ୍ତି ତାହାରେ କଲ୍ୟାଣ ॥
ଭୟେ ମୃଗେନ୍ଦ୍ର ଯେ ଏହାର । ମାତାର ଛାଡ଼ିଲା ଶରୀର । ୬୦ ।
ତେଣୁ ମୁଁ ଲଭିଲି ତାହାରେ । ଏବେ ସେ ଗଲା ବନଘୋରେ ॥
ଏମନ୍ତ ଶୁଣ ମହୀପାଳ । କ୍ଷଣେ ନ ଦେଖି ମୃଗବାଳ ॥
ବ୍ୟର୍ଥ କର୍ମରେ ସେ କାତର । ସ୍ୱକର୍ମ ତେଜି ନୃପବର ॥

ପୂର୍ବ ଜନ୍ମ କର୍ମ ତାର । ଶୁଭ କର୍ମକୁ କଲା ଦୂର ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନାଥନାଥ ନାରାୟଣ ॥
ତାର ଚରଣ ଦୂର କରି । ମୃଗବାଳକେ ମନ ଧରି ॥
ମୋକ୍ଷବନ୍ଧନେ ପ୍ରତିବନ୍ଧ । ହୋଇ ମୃଗବାଳ ପଶୁମନ୍ଦ ॥
ତା ଠାରେ ସ୍ନେହ ରାଜା କଲା । ଯୋଗ ନାଶନ ନ ଜାଣିଲା ॥
ମୃଗର ଲାଳନ ପାଳନ । କରି ବଞ୍ଚଇ ସେହୁ ଧନ ॥
ଏମନ୍ତେ କେତେଦିନ ଗଲା । ଆୟୁଷ ଶେଷ ତା ହୋଇଲା ॥
ଏମନ୍ତେ ଶୁଣ ହୋ ରାଜନ । କାଳର ହୋଇଲା ଅଧୀନ ।୬୧।
ସମୀପେ ଦେଖି ମୃଗବାଳ । ଶୋକରେ ହୋଇଲା ବ୍ୟାକୁଳ ॥
ପୂର୍ବର ପ୍ରାୟ ସ୍ନେହଭରେ । ମନ ଅର୍ପିଲା ତାହା ଠାରେ ॥
ପ୍ରଭୁର ସେବା ଭ୍ରଷ୍ଟ ହୋଇ । ମନେ ବହୁତ ତାପ ପାଇ ॥
ଅତ୍ୟନ୍ତ ଶୋକ କରି ମନେ । ପ୍ରାଣ ଛାଡ଼ିଲା ତତକ୍ଷଣେ ॥
ମୃଗର ତହିଁ ମନ ଥିଲା । ତେଣୁ ସେ ମୃଗ ଜନ୍ମ ହେଲା ॥
ପୂର୍ବ ଜନ୍ମର କଥା ତାର । ସୁମରଣ ହେଲା ନୃପବର ॥
ପୂର୍ବ ଜନ୍ମର ଯେ କାରଣ । ମନେ ଜାଣିଲା ସେ ରାଜନ ॥
ପ୍ରଭୁର ସେବା ନଷ୍ଟ ହୋଇ । ମନେ ବହୁତ ତାପ ପାଇ ॥
ଅତ୍ୟନ୍ତ ଶୋକ କରି ମନେ । କହଇ ଲୋତକ ନୟନେ ॥
ଭ୍ରଷ୍ଟ ହୋଇଲି ମୁଁ ପାମର । ପ୍ରଭୁର ସେବା କଲି ଦୂର ॥
ସମସ୍ତ ସଙ୍ଗ ମୁଁ ଛାଡ଼ିଲି । ବିବିଧ ଯଜ୍ଞ ଉପେକ୍ଷିଲି ॥
ନାମ ଶ୍ରବଣ ଉଚ୍ଚାରଣ । ନିରତେ କରି ପରାଧୀନ ॥
ସକଳ ଆତ୍ମା ଭଗବାନ । ମନ ଛାଡ଼ିଲି ପ୍ରତିଦିନ ॥
ଯେଣୁ ସେ ସକଳ ତେଜିଲି । ମୃଗ ପଶୁରେ ମନ ଦେଲି ॥
ଏମନ୍ତ ମନରେ ବିଚାରି । ଚପଳ ମନ ସ୍ଥିର କରି ॥
ତାହାର ମାତା ଯେ ହରିଣୀ । ତାହାକୁ ତେଜି ନୃପମଣି ॥
ପ୍ରଭୁର ଅତି ପ୍ରିୟସ୍ଥାନ । ଯେ ତୀର୍ଥ ଶାଳଗ୍ରାମ ନାମ ॥
ପରମ ସାଧୁ ମୁନିଗଣେ । ଅଛନ୍ତି ଯହିଁ ଅନୁକ୍ଷଣେ ॥
ତହିଁକି ଶୀଘ୍ର ଚଳିଯାଇ । ରହିଲା ମୃଗ ବାଟ ଗ୍ରହି ।୭୦।
କୁସଙ୍ଗ ଦୋଷକୁ ସେ ଜାଣି । ମନେ ବଞ୍ଚଇ ନରହରି ॥

ନୀରସ ଦଳ ସେ ଭକ୍ଷନ୍ତି । ମୃଗ ଶରୀର ଯିବା ପାଇଁ ॥
ଏମନ୍ତେ ଚରଇ ବହୁତ । କେମନ୍ତେ ଯିବ ଏ ଶରୀର ॥
ଏମନ୍ତେ ଶୁଣ ନରନାଥ । ମନେ ଚିନ୍ତିଲା ପୂର୍ବକୃତ୍ୟ ॥
ସେ ତୀର୍ଥଜଳରେ ତାହାର । ତେଜିଲା ମୃଗ କଳେବର ॥
ଏମନ୍ତେ କରଇ ବହୁତ । ଯେ ଥିଲା ପୂର୍ବ କର୍ମ ତାର ॥
ଯେ ପ୍ରଭୁ ବ୍ରହ୍ମାଣ୍ଡକାରଣ । ବ୍ରହ୍ମା ଚିନ୍ତନ୍ତି ଯା ଚରଣ ॥
ସେ ଦେବେଶ୍ୱର ନାରାୟଣ । ପାଦପଙ୍କଜ ସୁମରିଣ ॥
କହଇ ଦାସ ଜଗନ୍ନାଥ । ସାଧୁଙ୍କ ହିତେ ଭାଗବତ ॥
ପଞ୍ଚମସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ।୧୦୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭରତ-
ଚରିତେ ନାମ ଅଷ୍ଟମୋଽଧ୍ୟାୟଃ ।



## ନବମ ଅଧ୍ୟାୟ ।

ନବମେ ଜଡ଼ବିପ୍ରତ୍ୱେ ତସ୍ୟ ରାଗାଦ୍ୟଭାବତଃ ।
ଭଦ୍ରକାଳୀ ପଶୁତ୍ୱେଽପି ନିର୍ବିକାରତ୍ୱମୀର୍ଯ୍ୟତେ ।
ପିତୁଃ ପ୍ରାପ୍ତାଽପ୍ୟବଜ୍ଞାନେ ଭରତୋ ମୁକ୍ତତାଂ ଗତଃ ।
ଆରବ୍ଧକର୍ମବେଗେଣ ତଦନ୍ତେ ଜଡ଼ବିପ୍ରତାଂ ॥

ଶ୍ରୀଶୁକ ଉବାଚ ।

ଶୁଣ ହେ ରାଜା ପରୀକ୍ଷିତ । ଏ ଅନନ୍ତରେ ସେ ଭରତ ॥
ସ୍ଥବିର ତପ ଶମ ଦମ । ତତ୍ତ୍ୱେ ଅଛି ଯେ ନିୟମ ॥
ବ୍ରାହ୍ମଣଙ୍କ ମଧ୍ୟେ ଶ୍ରେଷ୍ଠତର । ଯେ ଅଙ୍ଗିରସ ଦ୍ୱିଜବର ॥
ତାହାଙ୍କୁ ପୁତ୍ର ଭାବ ବନ୍ଧ । ଜନ୍ମ ଲଭିଲା ତାର ତହିଁ ॥
ଅପରେ ତାର ସହୋଦର । ଉତ୍ତମ ସାଧୁ ଶୀଳବର ॥
ସେ ସାଧୁ ସଙ୍ଗରୁ ରାଜନ । ତାର ହୋଇଲା ଦିବ୍ୟଜ୍ଞାନ ॥
ଯେଣୁ କର୍ମବନ୍ଧ ଖଣ୍ଡନ । ଶ୍ରୀକୃଷ୍ଣ ନାମର ସ୍ମରଣ ॥
ତାହା ଶୁଣଇ ଅବିରତ । ପଦାରବିନ୍ଦେ ଦେଇ ଚିତ୍ତ ॥
ପ୍ରଭୁର କୃପାରେ ରାଜନ । ପୂର୍ବଜନ୍ମର କଥାମାନ

ସ୍ମରଣ ହୋଇଲା ତାହାରେ । ଅସାଧୁ ସଙ୍ଗକୁ ସେ ଡରେ ॥
ଜଡ଼ ଉନ୍ମତ୍ତ ଚିତ୍ତ ଧରି । ହୋଇ ସେ ବ୍ରାହ୍ମଣ କୁମର ॥
ଅଶେଷ ଜ୍ଞାନ ଶ୍ରେଷ୍ଠ ନିଧି । ଜଡ଼ ଲୋକଙ୍କୁ ଦେଖାଇ ॥
ତେବେହେଁ ପିତାଠାରେ ତାର । ସ୍ନେହ ହୋଇଲା ନୃପବର ॥
ସୁସାଧୁ ଦେଖି ଦ୍ୱିଜବର । ସଂସ୍କାର କଲା ସେ କୁମର ॥
ବେଦ ବିହିତ କ୍ରିୟା ମତେ । ଦଶକର୍ମକୁ ଯଥାଶତେ ॥
କହିବା ଶୁଣ ନୃପବର । ସେ ଯେ ବ୍ରାହ୍ମଣରେ କୁମର ॥
ଶଉଚ ଆଚମନ ବିଧି । ବ୍ରାହ୍ମଣ କର୍ମ ଯେତେ ଆଦି ॥
ଜାଣଇ ଆତ୍ମା ଅନୁମାନେ । ସକଳ ଶାସ୍ତ୍ରର ପ୍ରମାଣେ ॥
ପୁଅର ଶୁଭମନ ଜାଣି । ସେ ଯେ ବ୍ରାହ୍ମଣ ଶିରୋମଣି ॥
ଅନିଧ୍ୟନ୍ତ ନମ୍ରଭାବ ବାନ୍ଧି । ମନ ଅଟଇ ତାର ଶୁଦ୍ଧି ॥
ଓଁକାର ଆଦି ବେଦସାର । ବ୍ୟାହୃତି ପ୍ରଣବ ଅକ୍ଷର । ୨୯ ।
ସାବିତ୍ରୀ ମୂଳ-ମନ୍ତ୍ରସାର । ସକଳ ଦେଲେ ନୃପବର ॥
ଯଜନ ଆଦି ଷଟ୍‌କର୍ମ । ଏ ଯେ ବ୍ରାହ୍ମଣ ନିଜଧର୍ମ ॥
ଗୁରୁ ଶିଷ୍ୟ ସମେତେ ଯେତେ । ସବୁ କହିଲେ ଯଥୋଚିତେ ॥
ନିଜ ନନ୍ଦନରେ ବିପ୍ରବର । ଶିକ୍ଷା କରନ୍ତି ନିରନ୍ତର ॥
ଏମନ୍ତେ ଶୁଣ ନରନାଥ । ପୂର୍ଣ୍ଣ ହୋଇଲା ମନୋରଥ ॥
ଅତି ସନ୍ତୋଷ ସେ ବ୍ରାହ୍ମଣ । କାଳର ହୋଇଲେ ଅଧୀନ ॥
ଏଥିଅନ୍ତରେ ଦ୍ୱିଜସତୀ । ସେ ଯେ ଅଭାବ ଜଡ଼ମତି ॥
ତାହାର ଶ୍ରେଷ୍ଠ ସହୋଦରେ । ସମର୍ପ ଦେଲା ସେ କୁମରେ ॥
ଆପଣେ ପତିର ସଙ୍ଗତେ । ଚଳଇ ହରଷିତ ଚିତ୍ତେ । ୩୦ ।
ଏମନ୍ତେ ପିତାର ଅନ୍ତରେ । ସେ ଯେ ବ୍ରାହ୍ମଣର କୁମରେ ॥
ଜଡ଼ ଯେ ତାହାଙ୍କ ସୋଦର । ତାହାଙ୍କୁ କଲେ ଅନାଦର ॥
ତାହାର ପ୍ରଭାବ ନ ଜାଣି । ଜଡ଼ର ପ୍ରାୟ ତାକୁ ମଣି ॥
ଜଡ଼ ବଧିର ସେ ଉନ୍ମତ୍ତ । ଏମନ୍ତ ରୂପେ ସେ ଭରତ ॥
ମୂକସେବକ ପଶୁ ଯେତେ । ତାହାଙ୍କୁ ରଖଇ ନିରତେ ॥
ପର ଅଧୀନ ପ୍ରାୟ ହୋଇ । ଲୋକର କାର୍ଯ୍ୟକୁ କରଇ ॥
ଲୋକେ ଶ୍ରଦ୍ଧାରେ ତାହା ଦେଇ । ପରମ ସନ୍ତୋଷେ ଭୁଞ୍ଜଇ ॥

କେବେହେଁ ଇନ୍ଦ୍ରିୟ-ପ୍ରୀତରେ । ସ୍ମରଣ ନ କର କାହାରେ ॥
ପ୍ରବୃତ୍ତ ହୋଇ ସର୍ବଠାରେ । ପରମ ଆନନ୍ଦ ଶରୀରେ ।୪୦।
ସର୍ବ ଦୁଃଖରେ ସମ ଭାବ । ହୃଦେ ନ କରେ ଅହଙ୍କାର ॥
କଷ୍ଟେ ବରଷା ଶୀତ ତପ୍ତ । ସକଳ ସହେ ସେ ଭରତ ॥
ଧରଇ ମହାମଣି ସମ । ଶରୀର ଅତି ସ୍ଥୂଳ ପୀନ ॥
ଅତ୍ୟନ୍ତ ବ୍ରହ୍ମତେଜ ହୋଇ । ଜଡ଼ର ପ୍ରାୟ ସେ ଭ୍ରମଇ ॥
ଆହାର ଆଧ ସର୍ବଠାରେ । ସେ ଥାଇ ନଷ୍ଟା ବ୍ୟବହାରେ ॥
ତଥାପି ଶୁଣ ହେ ରାଜନ । ତାହାର ନିଜ ଭ୍ରାତୃଗଣ ॥
କୃଷି ରକ୍ଷଣ କର୍ମଠାରେ । ନିଯୁକ୍ତ କରନ୍ତି ତାହାରେ ॥
ଭ୍ରାତୃ ବଚନ ଅନୁମତେ । କୃଷି କରଇ ଅବିରତେ ॥
ମୃଗ ବରାହଙ୍କୁ ନିବାରି । ଥାଇ ସେ ନିରତେ ଅବୋର ॥
ଶୁଣ ହେ ଅଭିମନ୍ୟୁବଳା । ଏମନ୍ତେ କେତେଦିନ ଗଲା ॥
ବୃଷଳୀପତି ଯେ ରାଜନ । ପୁତ୍ରକାମରେ ହୋଇ ଛନ୍ନ ।୫୦।
ଚଣ୍ଡୀର ସନ୍ତୋଷ କାରଣେ । ସେ ନର ପଶୁ ସମ୍ପାଦନେ ॥
ସେ ନରପଶୁ କେଣେ ଗଲା । ତା ଅନୁଚର ଯେ ଜାଣିଲା ॥
ତାହାର ପଥ ଅନୁସରେ । ଧାଇଁଲେ ତାର ଅନୁଚରେ ॥
ନିଶି ଅନ୍ଧାର ମହାତମ । ଖୋଜନ୍ତି ନାନା ଦେଶ ଗ୍ରାମ ॥
ପଶୁ ନ ପାଇ ଅନୁଚରେ । ନିରାଶ ହୋଇଲେ ଅନ୍ତରେ ॥
ଗୃହକୁ କରନ୍ତି ଗମନ । ଦେଖିଲେ ବିପ୍ରଙ୍କ ନନ୍ଦନ ॥
ଏଥୁଅନ୍ତେ ସେ ନୃପମଣି । ଜଡ଼ର ପ୍ରଭାବ ନ ଜାଣି ॥
ବନ୍ଧନ କରି ତତକ୍ଷଣେ । ସ୍ୱାମୀର କର୍ମ ସମ୍ପାଦନେ ॥
ଚଣ୍ଡିକା ଗୃହେ ପ୍ରବେଶିଲେ । ସ୍ୱାମୀଙ୍କ ସମର୍ପଣ ଦେଲେ ॥
ସୁଗନ୍ଧ ଶୀତଳ ଜଳରେ । ସ୍ନାନ କରାଇ ଯେ ବିଧିରେ ।୬୦।
ଶୁଭ୍ର ନିର୍ମଳ ବସ୍ତ୍ର ଦେଲେ । ନାନା ଭୂଷଣେ ଯେ ମଣ୍ଡିଲେ ॥
ବିବିଧ ସ୍ୱାଦୁ ଦ୍ରବ୍ୟମାନ । ତାହାଙ୍କୁ କରାଇ ଭୋଜନ ॥
ସୁଗନ୍ଧ ଧୂପ ଦୀପ ଦେଇ । ମାଳାଏ କଣ୍ଠରେ ଲମ୍ବାଇ ॥
ମୃଦଙ୍ଗ ଶଙ୍ଖ ଘୋଷସ୍ୱନ । ଆନନ୍ଦେ କରି ଗୀତ ଗାନ ॥
ଏମନ୍ତେ ନାନା ବିଧିମତେ । ସ୍ଥାପିଲେ ଦେବୀର ଅଗ୍ରତେ ॥

ବୃଷଳୀପତି ଏ ଅନ୍ତରେ । ତୀକ୍ଷ୍ଣ ଖଡ୍ଗ ଘେନି କରେ ॥
ତାହାର ରୁଧିର ସେ ଦେଇ । ଦେବୀ ସନ୍ତୋଷ ହେବାପାଇଁ ॥
ଏମନ୍ତ ଶୁଣ ହେ ସ୍ୱଜନ । ବୃଷଳେ ହୋଇ ମତିଭ୍ରମ ॥
ଧନ ସମ୍ପଦେ ମୋଦ ଭର । ଧର୍ମ ଅଧର୍ମ ନ ବିଗୁର ॥
ଈଶ୍ୱର ଅଂଶକୁ ଯେ ଧରେ । ହିଂସା କରଇ ସେ ତାହାରେ ॥
ଦାରୁଣ କର୍ମ ଏହାଙ୍କର । ପ୍ରତ୍ୟକ୍ଷେ ବିପ୍ରର କୁମର ।୨୯।
ବିଷ୍ଣୁର କଳାବନ୍ତ ସେହ । ତାହାକୁ କଦର୍ଯ୍ୟନ୍ତ ନେଇ ॥
ଯେ ସର୍ବଭୂତେ ସମଚିତ୍ତ । ବିଷ୍ଣୁ ଜପଇ ଅବିରତ ॥
ତାହାକୁ ପଶୁ ହେ ବିଗୁର । ନିକଟେ ହୋଇ ଖଡ୍ଗଧାରୀ ॥
ଏଥିଅନ୍ତରେ ଦେବୀ ସେତ । ବ୍ରାହ୍ମଣ ତେଜେ ଅପ୍ରମିତ ॥
ସହିନାଭି କରାଳ ନୃସିଂହ । ତେଣୁ କଦର୍ଯ୍ୟ ଦେବୀ ଦେହ ॥
ତକ୍ଷଣେ ହଠାତ ସେ ହୋଇ । ଉଠିଲା ଅତି ତେଜ ବହ୍ନି ॥
ସେ ଦେବୀ ଚଣ୍ଡୀ ଭଦ୍ରକାଳୀ । ଅତ୍ୟନ୍ତ ତେଜେଣ ପ୍ରଜ୍ୱଳି ॥
ଭ୍ରୂକୁଟି ଯୁଗ ଗାଢ ତାର । ବଦନ ଦିଶେ ଭୟଙ୍କର ॥
ଦନ୍ତ ଦିଶଇ ଯେ କରାଳ । ଅରୁଣ ନୟନ ଯୁଗଳ ॥
ଅଟ୍ଟହାସ୍ୟ ଯେ ଘୋର ସ୍ୱନ । ପୂର୍ଣ୍ଣ ନୋହଇ ଦେବୀ ମନ ॥
ଧଇଁଲ ଅତି ଶୀଘ୍ରତରେ । ପାପିଷ୍ଠମାନଙ୍କ ଉପରେ ॥
ତାହାଙ୍କ ହସ୍ତୁ ଖଡ୍ଗ ଘେନ । ଶୁଣ ପରୀକ୍ଷ ନୃପମଣି ॥
ଶାଣିତ ଅତି ତୀକ୍ଷ୍ଣଧାର । ଛେଦିଲେ ତାହାଙ୍କର ଶିର ॥
ପରମ ସନ୍ତୋଷ ସେ ହୋଇ । ଆପଣାଗଣ ସଙ୍ଗେ ନେଇ ॥
ରୁଧିର ସୁରା କରି ପାନ । ମତ୍ତେ ହୋଇଲେ ମନେ ଛନ୍ନ ॥
ଦେବୀର ଯେତେ ପାରିଷଦ । ଆନନ୍ଦେ କରି ଗୀତ ନାଦ ॥
ମସ୍ତକମାନ ଦଣ୍ଡା କରି । ହରଷେ ବଜାନ୍ତି ହେହରି
ଶୁଣ ସ୍ୱଜନ ସାବଧାନେ । ଯେତେ ବୃଷଳ ପାପିଜନେ ॥
ସାଧୁଙ୍କୁ କଲେ ପରମାଦ । ଆପଣେ ନାଶିଲେ ସମ୍ପଦ ।୩୦।
ବିଷ୍ଣୁଭକତ ଯେତେ ନରେ । ଦୟା ବହନ୍ତି ସର୍ବଠାରେ ॥
ବୈରଭ୍ୟ ହିଂସା ଦୂରେ ତେଜ । ସେ ପାଦପଦ୍ମ ଯୁଗେ ଭଜ ॥
ପରମହଂସ ଭାଗବତ । ତାହାକୁ ରଖନ୍ତି ଅନନ୍ତ ॥

କହଇ ଦାସ ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ।
ପ୍ରଭୁର ପାଦପଦ୍ମ ତଳେ । ମୋ ମନ ରହୁବ ନିଶ୍ଚଳେ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଜଡ଼ଭରତ-
ଚରିତେ ନାମ ନବମୋଽଧ୍ୟାୟଃ ।



# ଦଶମ ଅଧ୍ୟାୟ ।

ଦଶମେଽଧିଯତା ରାଜା ଶିବିକାଂ ସ୍ୱାଂ ବହନ୍ମୁନିଃ ।
ସ୍ୱଦୁର୍ବାଦାନୁବାଦେନ ବକ୍ଷ୍ୟାସ୍ତ ପ୍ରସାଦତଃ ।
ଏତଭୂତାର୍ଥକାର୍ଯ୍ୟଭ୍ରମଙ୍କଚଙ୍ଗୟୋଃ ସମଂ ।
ଇତି ସର୍ବଜ୍ଞତାପୈର୍ଦ୍ଧେୟରହୂଗଣକଥେରଣଂ ।

ଶ୍ରୀ ଶୁକ ଉବାଚ ।

ଏଥୁ ଅନ୍ତରେ ଏକଦିନେ । ଶୁଣ ରାଜନ ସାବଧାନେ ।
ସିନ୍ଧୁପତି ଯେ ରହୁଗଣ । ସେ ରାଜା ବିଷ୍ଣୁ ପରାୟଣ ।
ତାହାର ଏକଷଠି ଭୃତ୍ୟେ । ରାଜାର ଗମନ ନିମନ୍ତେ ।
ବିମାନ ବହି ନ ପାରଇ । ଏକ ପୁରୁଷ ସେ ଲୋଡ଼ଇ ।
ବିଧାତା ଯୋଗ ଦେଖ ତାର । ସେ ବିଷ୍ଣୁ ଅଂଶେ ନୃପବର ।
ସେଠାରେ ହେଲେ ଉପସ୍ଥିତ । ତାହାଙ୍କୁ ଦେଖି ନୃପଦୂତ ।
ହରଷମନେ ବିଚାରଇ । ଏହାର ତୁଲ୍ୟ କେହି ନାହିଁ ।
କି ହୃଷ୍ଟପୁଷ୍ଟ ଯା ଶରୀର । ବିମାନ ବହିବ ସୁନ୍ଦର ।
ଏମନ୍ତେ ଶୀଘ୍ର ଘେନି ଗଲେ । ବିମାନ କୁହାରେ ଯୋଜିଲେ ।
ତହି ନିଯୁକ୍ତ ନର ସଙ୍ଗେ । ବିମାନ ବହେ ନାନା ରଙ୍ଗେ ।
ସାକ୍ଷାତେ ବିଷ୍ଣୁ ଅଂଶ ସେହି । ପର ଅଧୀନ ପ୍ରାପ୍ତ ହୋଇ ।
ସେ ଯେ ପରମଭାଗବତ । ଏ କର୍ମ ତାର ଅନୁଚିତ ।
ବିମାନ ବହି ନ ପାରଇ । ବିଷମ ଭାବେ ସେ ଚଳଇ ।
କ୍ଷୁଦ୍ରଜନ୍ତୁଙ୍କ ମୃତ୍ୟୁ ଭୟେ । ପାଦ ନ ଷେପନ୍ତି ନିର୍ଭୟେ ।
ତେଣୁ ବିମାନ ବକ୍ର ହୋଇ । ରାଜାର କଷ୍ଟ ହୋଏ ଦେହି ।

ବିମାନରୂଢ଼ ପ୍ରକୁଷ୍ଠରେ । ରାଜା କହଇ କୋପଭରେ ॥
ବିଷମ ସମଭାବ ହୋଇ । ବିମାନ ବହ କାହିଁ ପାଇଁ ॥
ପ୍ରଭୁ ବଚନ କୋପଭରେ । ଶୁଣି କମ୍ପିଲେ ସେ ଡରରେ ॥
ଅତ୍ୟନ୍ତ ଭୟ-ଚକ୍ର ହୋଇ । ଜଡଙ୍କୁ ଦେଲେ ସେ ଦେଖାଇ ॥
ହେ ନାଥ ଆମ୍ଭ ଦୋଷ ନାହିଁ । ଏ ନୂଆ ପୁରୁଷ ନ ଚଳଇ ॥
ଏହାର ବନ୍ଧ ଗତି ପାଇ । ବିମାନ ବନ୍ଧୁର ହୋଇ ॥
ହେ ନାଥ ଶୁଣ ସାବଧାନେ । ପୁଣିହିଁ ଚଳଇ ବିଷମେ ॥
ଏହାର ସଙ୍ଗତେ ରାଜନ । ଚଳି ନ ପାରୁ ବିମାନ ॥
ସଂସର୍ଗ ଦୋଷରୁ ଆମ୍ଭରେ । ଦଣ୍ଡିବ ଯେବେ ନୃପବରେ ॥
ଏମନ୍ତେ ଭୃତ୍ୟବାକ୍ୟ ଶୁଣି । ସେ ଯେ ରାଜନ ଶିରୋମଣି ॥
ସ୍ୱଭାବେ ସାଧୁ ସେ ବୋଲାଇ । ତମଗୁଣରୁ କ୍ରୋଧ ବହି ॥
ବିଷ୍ଣୁ ଭକତ ଜଡ଼ଭରତ । ତାହାଙ୍କୁ କହଇ ଉଦ୍ଧତ ॥

ରହୂଗଣ ଉବାଚ ।

ସୁପୁଷ୍ଟ ସ୍ଥୂଳ ତୋ ଶରୀର । କଠିନ ପୀନ ପାଦ କର ॥
ସ୍ଥୁକତେ ଚକ୍ଷୁ କି କାରଣ । ଏ ତୋର ଅଙ୍ଗ ନିଷ୍କାରଣ ॥
କ୍ଷୁଦ୍ର ଯେ ତୋର ସଙ୍ଗତରେ । ବିମାନ ବହନ୍ତି ଯତ୍ନରେ । ୩୦ ।
ବ୍ୟର୍ଥ ଏ ତୋର କଳେବର । ମିଥ୍ୟାରେ ବହୁ ତୁ ଶରୀର ॥
ଏମନ୍ତେ ଶୁଣ ପରୀକ୍ଷିତ । ସେ ଯେ ବ୍ରାହ୍ମଣ ବିଷ୍ଣୁଭକ୍ତ ॥
ଏମନ୍ତ ବଚନେ ମଉନ । ସ୍ୱଭାବେ ବହଇ ବିମାନ ॥
ପୁଣି ବିମାନ ବଙ୍କ ହେଲା । ସେ ରାଜା ଅତି କୋପ କଲା ॥
ଅରେ ପାମର ମୃତବତ୍ । ଜୀବନ ଥାଉଁ ତୁହି ମୃତ ॥
ଏ ମୋର ଅଙ୍ଗେ କଷ୍ଟ ଦେଉ । ଜନ୍ମଉଚ୍ଛନ୍ନ କର୍ତ୍ତା ବନ୍ଧୁ ॥
ଯମର ପ୍ରାୟ ମୁଁ ଅଟଇ । ଦୁଷ୍ଟଙ୍କ ଦର୍ପ ମୁଁ ଧ୍ୱଂସଇ ॥
ତୋହର ମତ୍ତଭାବ ମୁହିଁ । ଆଜ ଯେ ଦୂର କରିବଇଁ ॥
ଏମନ୍ତେ ଅତି ନିନ୍ଦାମାନ । ବହୁତ କଲେ ସେ ରାଜନ ॥
ତମୋଗୁଣରୁ କ୍ରୋଧ ତାର । ରଜୋଗୁଣରୁ ଅହଂକାର । ୪୦ ।
ସକଳ ଭୂତେ ଦୟାସାର । ସେ ଯେ ବ୍ରାହ୍ମଣର କୁମର ॥
ଈଷତ-ହାସ୍ୟ ବଦନରେ । ବଚନ କହଇ ରାଜାରେ ॥

ଭରତ ଉବାଚ ।

ହେ ନୃପ ଶୁଣ ସାବଧାନେ । ତୁମ୍ଭେ ଯେ କହିଲ ବଚନେ ॥
ଗମନ କରି ନ ପାରଇ । ସେ କଥା ଉଚିତ ଅଟଇ ॥
ଏ କଥା ଅମ୍ଭ ସାଧୁପଣ । ଲୋକରେ କରନ୍ତି ବାଖ୍ୟାନ ॥
ଜୀବନମୁକ୍ତ ଯେ ବୋଇଲ । ସେ କଥା ସତ୍ୟ ଯେ କହିଲ ॥
କ୍ଲେଶ ଶରୀର ଏ ଅମ୍ଭର । କେବେହେଁ ନୋହେ ନୃପବର ॥
ମାନ ଅହଙ୍କାରାଦି ଯେତେ । ଆହାର ନାନା ବ୍ୟାଧି ହେତେ ॥
କ୍ଷୁଧା ପିପାସା ଭୟମାନ । ଏ ମୋର ନାହିଁ ହେ ରାଜନ ॥
ନିଦ୍ରା ବିହାର କ୍ରୋଧ ଯେତେ । କାମ ଲୋଭ ମୋହ ସମ୍ମତେ ॥
ଯେ ପ୍ରାଣୀ ଦେହବନ୍ତ ହୋଇ । ତାହାର ତହିଁ ଏତେ ଥାଇ ॥
ମୋହର ଦେହେ ଏତେ ନାହିଁ । ଜୀବନ ଥାଉଁ ମୃତ ମୁହିଁ । ୫୨ ।
କେ ଅବା କାହାକୁ ବହଇ । ଏମନ୍ତ ମୁହିଁ ନ ଦେଖଇ ॥
କେବା ଈଶ୍ୱର କେ କିଂକର । ଏମନ୍ତ ନ ଦେଖି ଉପର ॥
ତୁମ୍ଭ ଆମ୍ଭର ଏ ବିଗ୍ରର । କର୍ପା କହିଲ ନୃପବର ॥
ଅମ୍ଭେ କି କହିବୁ ତୁମ୍ଭରେ । ସ୍ୱଭାବେ ଏ ଜଡ଼ ଶରୀରେ ॥
ପ୍ରମତ୍ତ ଜଡ଼ଭାବେ ମୁହିଁ । ବିମାନ କେବେହେଁ ନ ବହି ॥

ଶ୍ରୀ ଶୁକ ଉବାଚ ।

ଶୁଣ ପରୀକ୍ଷ ନୃପବର । ସେ ଯେ ବ୍ରାହ୍ମଣର କୁମର ॥
ସୁଶୀଳ ସମ ସାଧୁଚିତ୍ତ । ବିଶେଷେ ବିଷ୍ଣୁର ଭକତ ॥
ତାହାର ବାକ୍ୟ ଅନୁସାରେ । ଏମନ୍ତ କହି ସେ ମଧୁରେ । ୬୦ ।
ପ୍ରାରବ୍ଧ କର୍ମ କ୍ଷୟ ଯାଇ । ପୁଣି ବସନ୍ତି ତୁନି ହୋଇ ॥
ତତ୍ତ୍ୱ ଯାଙ୍କ ଶାନ୍ତ ମନରେ । ଯାଉ ସେ ଥିଲେ ସ୍ନେହଭରେ ॥
ବିଷୟା କର୍ମ କର ଦୂର । ଏମନ୍ତେ ଶୁଣ ନୃପବର ॥
ଦ୍ୱିଜ ବଚନ ତତ୍ତ୍ୱଜ୍ଞାନ । ବିଷୟ ତାପ ବିଖଣ୍ଡନ ॥
ଅମୃତ ପ୍ରାୟେ ତାହା ଜାଣି । ମନେ ଚିନ୍ତିଲେ ନୃପମଣି ॥
ତକ୍ଷଣେ ଶୀଘ୍ର ଚଳ ହୋଇ । ବିମାନୁ ପଡ଼ିଲେ ଓହ୍ଲାଇ ॥
ବ୍ରାହ୍ମଣ ପାଦଯୁଗଳରେ । ଶିର ଅର୍ପିଲେ ଶୀଘ୍ରତରେ ॥
କ୍ଷମା କରାଇ ଅପରାଧ । କହଇ ବାକ୍ୟ ଗଦଗଦ ॥

ରହୂଗଣ ଉବାଚ ।

କେ ତୁମ୍ଭେ କହ ସ୍ୱାମି ମୋତେ । କରୁଣା କର ଏ ଛାଂକତେ ॥
ଶୃପତ ହୋଇ ଭ୍ରମୁଥାଅ । ବ୍ରାହ୍ମଣରୂପ ତୁମ୍ଭେ କହ । ୭୦ ।
କପିଁ ଅବଧୂତ ବେଶରେ । କେମନ୍ତେ ମିଳିଲ ଏଠାରେ ॥
କାହିଁ ତୁମ୍ଭର ନିଜ ସ୍ଥାନ । କେମନ୍ତେ ବହିଲ ଯାନ ॥
ଏ ଯେ ଅପରାଧ ମୋହର । କ୍ଷମା ତୁ କର ଦ୍ୱିଜବର ॥
ଇନ୍ଦ୍ରାଦି ଯେତେ ଦେବାସୁର । ଶଙ୍କର ଆଦି ଦେବାଙ୍କର ॥
ଏହାଙ୍କ କ୍ରୋଧରେ ମୋହର । ଭୟ ଯେ ନାହିଁ ବିପ୍ରବର ॥
ବ୍ରାହ୍ମଣ ଅପମାନେ ମୋର । ହୃଦ କମ୍ପଇ ଥରହର ॥
ଏଣୁ ଅପରାଧ ମୋହର । କ୍ଷମା କରିବା ବିପ୍ରବର ॥
ଅଶେଷ ଜ୍ଞାନର କାରଣ । ତୁମ୍ଭେ ଯେ ବିଷ୍ଣୁ ପରାପୂର୍ଣ ॥
ଅଜ୍ଞାନ ପ୍ରାଣୀମାନଙ୍କରେ । ଦେଖଅ ଏ ଜଡ଼ ଶରୀରେ ॥
ତୋହର ଯେତେ ବାକ୍ୟମାନ । ଗ୍ରଥିତ ହୋଇଅଛି ଜ୍ଞାନ । ୮୦ ।
ସକଳ ଜ୍ଞାନବନ୍ତ ତୁହି । ତୋତେ ମୁଁ ପ୍ରସନ୍ନ କରାଇ ॥
ଜ୍ଞାନସ୍ୱରୂପ ଏ ତୋହର । ହେ ନାଥ କୃପା ମୋତେ କର ॥
ଉଦ୍ଧାର ଜଡ଼ରୂପ ହୋଇ । ପ୍ରାଣୀଙ୍କ ହିତେ ଭ୍ରମୁ ତୁହି ॥
ହେ ନାଥ ବିପ୍ର ଯୋଗେଶ୍ୱର । ମୁଁ ମୂଢ଼ମତି ଯେ ପାମର ॥
କେମନ୍ତେ ତୋତେ ଚିହ୍ନିବଇଁ । ସ୍ୱଭାବେ ଗୃହବନ୍ଧେ ରହି ॥
ଏ ଯେ ମୋହର ଅନୁଚର । ଅତ୍ୟନ୍ତ ମୂଢ଼ ଦୁରାଚାର ॥
ଅଜ୍ଞାନରୂପେ ଆଣି ଦେଲେ । ବିଧାତା ଘଟଣାର ବଳେ ॥
ଶୁଣ ପରୀକ୍ଷ ସାବଧାନେ । ସେ ବିପ୍ର ନୃପଙ୍କ ବଚନେ ॥
ଜ୍ଞାନ ବୈରାଗ୍ୟ ଆଦି କରି । ସକଳ ଏଥି ଅଛି ପୂରି ॥
ଗୋବିନ୍ଦ ପାଦପଦ୍ମ ତଳେ । ମନ ତୁ ରଖ ସୁନିଶ୍ଚଳେ ॥
ପଞ୍ଚମସ୍କନ୍ଧେ ଏହୁ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
କୃଷ୍ଣ ଚରଣେ ନିତ୍ୟେ ଭଜ । କହଇ ଜଗନ୍ନାଥ ଦ୍ୱିଜ । ୯୨ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ରହୂଗଣ ଜଡ଼-
ଭରତ ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।



# ଏକାଦଶ ଅଧ୍ୟାୟ ।

ଏକାଦଶେଽଥ ସମ୍ପୃଷ୍ଟୋ ଦ୍ୱିଜେଣ ମହାଭୃତା ।
ଉପାଧିଶାନ୍ତ୍ୟୈ ପରଂ ଜ୍ଞାନଂ ସ ଯୋଗୀତି ନିଗଦ୍ୟତେ ॥

ବ୍ରାହ୍ମଣ ଉବାଚ ।

ହେ ରଜା ଶୁଣ ସାବଧାନେ । ତୁ ଯେ କହିଲୁ ଅନୁମାନେ ॥
ମୂର୍ଖ ପଣ୍ଡିତ ଦୁଇ ମତ । ଏ କଥା ଅଟଇ ଉଚିତ ॥
ଯଥାପି ପଣ୍ଡିତ ଯେ ହୋହେ । ତତ୍ତ୍ୱଭାବରେ ଶୋଧ ବହେ ॥
ଅପରେ ଶୁଣ ହେ ରାଜନ । ଗୃହକର୍ମରେ ଯେଉଁ ଜନ ॥
ସୁକର୍ମ ବିଦ୍ୟାକୁ ଆଚରେ । ତତ୍ତ୍ୱଗୁଣକୁ ମନେ ଧରେ ॥
ପଣ୍ଡିତ ବୋଲନ୍ତି ସଂସାରେ । ଯେ ତତ୍ତ୍ୱଜ୍ଞାନ ମନେ ସ୍ମରେ ॥
ସେ ସାଧୁ ବୋଲାଇ ସଂସାରେ । ପ୍ରାଣୀଙ୍କି ଯେବା ଦୟା କରେ ॥
ଦଣ୍ଡିବା ଶକ୍ତି ଯାର ଥାଇ । ତଥାପି କ୍ଷମା ସେ କରଇ ॥
ସାଧୁଙ୍କ ଶ୍ରେଷ୍ଠ ସେହି ନର । ସୁଖ ଦୁଃଖରୁ ସେ ବାହାର ॥
ଅପରେ ଶୁଣ ନୃପବର । ଯାବତ ପ୍ରାଣିମାନଙ୍କର ॥
ସତ୍ତ୍ୱ ରଜତମ ଗୁଣରେ । ମନ ହୋଇଲା ଦୃଢ଼କରେ ॥
ଯେ ଗୁଣ ଯାହାର ହୁଅଇ । ସେ ଗୁଣ ପ୍ରାଣୀ ପ୍ରକାଶଇ ॥
ସ୍ୱଧର୍ମ ମନଭାବ ଦୁଇ । ମଧ୍ୟାସ୍ଥ ଭାବକୁ ସେ ବହି ॥
ଧରଇ ଗୁଣ ଅନୁସାରେ । ସ୍ୱରୂପ ବେଭାର ଆଚାରେ ॥
ଯେ ସୁଖ ଦୁଃଖ ଅଛି କରି । ଲଭଇ କର୍ମକୁ ଆଦରି ॥
ଦେଖ ଏ ଅନିତ୍ୟ ସଂସାର । ମାୟାରେ ହୋଇ ତତପର ॥
ତାହାର ଗୁଣ ଅନୁସାରେ । ପ୍ରାଣୀ ଯେ କର୍ମମାନ କରେ ॥
ଏ ତର୍କଭାବକୁ ଯେ ବହି । ସକଳ ସାକ୍ଷୀ ହୋଏ ସେହି ॥
ତେଣୁ କହନ୍ତି ବେଦ ସାର । ଗୁଣ ନିର୍ଗୁଣ ଏ ଅପାର ॥
ନିର୍ଗୁଣଭାବକୁ ଯେ ଧରେ । ସେ ପ୍ରାଣୀ ଭବଜଳୁ ତରେ ।
ଘୃତ ପ୍ରଦୀପ ପ୍ରାପ୍ତ ହୋଇ । ସ୍ୱଗୁଣ ସଂସାରେ ଭ୍ରମଇ ॥
ଦ୍ରବ୍ୟର ଭାବେ କର୍ମମାନ । ଆଶ୍ରୟ ଅଦା ହେ ରାଜନ ॥
ମାୟାର ବଳେ ଏ ସଂସାରେ । ପ୍ରାଣୀର ମନକୁ ଯେ ହରେ ।

କ୍ଷେତ୍ରଜ୍ଞ ଭାବକୁ ଆଚର । ଶରୀରେ ବସନ୍ତି ଅବୋଧ ॥

ପ୍ରତ୍ୟକ୍ଷ ଭାବେ ଯେ ଅଛଇ । ତାହାକୁ ପ୍ରାଣୀ ନ ଜାଣଇ ॥

ଶୁଦ୍ଧ ଅଶୁଦ୍ଧ ସଦାଗ୍ରହ । ସେ ଯେ କରନ୍ତି ପ୍ରାଣୀଙ୍କର ॥

ଅପରେ ଶୁଣ ହେ ରାଜନ । କ୍ଷେତ୍ରଜ୍ଞ ପୁରୁଷ ପୁରାଣ ॥

ପରମଆତ୍ମା ଜ୍ୟୋତିର୍ମୟେ । ଅନ୍ୟାନ୍ୟ ବୃତ୍ତି ଯାର ଦେହେ ॥

ସେ ନାରାୟଣ ଭଗବାନ । ବାସୁଦେବ ଆଦ୍ୟ କାରଣ । ୩୦ ।

ଯାର ସ୍ମରଣେ ପାପମାନ । ବିଶେଷେ ହୁଅନ୍ତି ଖଣ୍ଡନ ॥

ମାୟାର ବଳେ ଏ ଜଗତେ । କ୍ରୀଡ଼ା କରନ୍ତି ଅବିରତେ ॥

ସ୍ଥାବର ଜଙ୍ଗମାଦି ଠାରେ । ପବନ ଯେସନେ ସଞ୍ଚରେ ॥

ତେମନ୍ତ ହୋଇ ସର୍ବଠାରେ । କ୍ଷେତ୍ରଜ୍ଞରୂପେ ସେ ବିହରେ ॥

ଯାବତକାଳ ପ୍ରାଣିଗଣ । ମାୟାକୁ ନ କରେ ଖଣ୍ଡନ ॥

ଷଡ଼ଅରିର ନ ଜିଣଇ । ବିମୁକ୍ତ ସଙ୍ଗ ସେ ନୁହଇ ॥

ପ୍ରଭୁଙ୍କୁ ଯେଣୁ ସେ ନ ଜାଣେ । ତାବତ ଭ୍ରମେ ଅକାରଣେ ॥

ସଂସାର ତାପ ଦାବାନଳ । ସେ ଯେ ଅନାଦି ଆଦିମୂଳ ॥

ଯାବତ ତାକୁ ନ ଚିହ୍ନଇ । ଶୋକ ମୋହରେ ସେ ଭ୍ରମଇ ॥

ତୁ ଏବେ ଶୁଣ ନୃପବର । ଏ ଯେ ବ୍ରହ୍ମାଣ୍ଡର ଈଶ୍ୱର ॥

ଅଖିଳ ପ୍ରାଣିଙ୍କର ଗୁରୁ । ଯାର ମହିମା ମହାମେରୁ ॥

ତାହାର ଚରଣାରବିନ୍ଦେ । ମନ ନିବେଶି ଅପ୍ରମାଦେ ॥

ମାୟା କପଟ ଏ ସଂସାର । ତୁ ଏହା ଶୀଘ୍ର ପରିହର ।

କହଇ ବିପ୍ର ଜଗନ୍ନାଥ । ହରି ଚରିତ ଭାଗବତ ॥

ପଞ୍ଚମସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

ସେ ପାଦପଦ୍ମ ଯୁଗଳରେ । ଚିତ୍ତ ମୋ ରହୁ ନିରନ୍ତରେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ରହୂଗଣ ବ୍ରାହ୍ମଣ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।



# ଦ୍ୱାଦଶ ଅଧ୍ୟାୟ ।

ଦ୍ୱାଦଶେ ପୁନରାପୃଷ୍ଟଃ ସନ୍ଦେହେନ ମହାତ୍ମନା ।
ସ ଯୋଗୀ ସର୍ବସନ୍ଦେହାନୁପାନୁଦ୍‌ଦର୍ଶୟତେ ॥

ରହୂଗଣୋବାଚ ।

ନମଇଁ ପ୍ରଭୁ ତପ୍ତଚର । ପ୍ରାଣୀଙ୍କ ହିତେ ତୋ ଶରୀର ॥
ଇଚ୍ଛା ଉଦ୍ଧାର ଯେ ତୋହର । ନମସ୍ତେ ଦୟାର ସାଗର ॥
ସ୍ୱପ୍ରଭାବରେ ଭ୍ରମୁ ତୁହି । ଏ ତୋର ମାୟା କେ ଜାଣଇ ॥
ବ୍ୟର୍ଥରେ ପ୍ରାଣୀ ଅତଯାତ । ତୁ ମାୟା ରୂପରେ ଯେ ସ୍ଥିତ ॥
ବ୍ୟାଧି-ପୀଡ଼ିତ ପ୍ରାଣୀମାନେ । ତାହାଙ୍କୁ ଔଷଧ ଯେସନେ ॥
ନିଦାଘ ତାପରେ ପୀଡ଼ିତ । ତାହାଙ୍କୁ ଯେସନେ ଜଳଶୀତ ॥
ସଂସାର ଦୁଃଖ ଦାବାନଳ । ତହିଁ ମୁଁ ହୋଇଣ ଅକୁଳ ॥
ପୀୟୂଷରସ ତୁମ୍ଭ ବାଣୀ । ପାଇ ତରିଲି ଦ୍ୱିଜମଣି ॥
ସଂଶୟ ସର୍ବରୁଁ ମୋହର । ତୁମ୍ଭେ ଛେଦିଲ ଦ୍ୱିଜବର ॥
ଅଜ୍ଞାନ ଜଡ଼ଭାବ ଥିଲେ । ତୁମ୍ଭେ ତେଜିବ ତାହା ଭଲେ ॥
ଅଧ୍ୟାତ୍ମ୍ୟ ଯୋଗ ତୋ ବଚନ । ଶୁଣି ସନ୍ତୋଷ ମୋର ମନ ॥
ଯେତେ ସ୍ୱର୍ଗାଦ୍ୟା ଫଳମାନ । କହିଲ ଈଶ୍ୱର ଅଧୀନ ॥
ପରମ ତତ୍ତ୍ୱ ଏବେ ପାଇ । ପୃଥକ ବୁଦ୍ଧି ମନ ଦେଇ ॥
ତତ୍ତ୍ୱଜ୍ଞାନ ଏ ପ୍ରାଣୀଙ୍କର । ମନ ନହଇ ଦୃଢ଼ତର ॥

ବ୍ରାହ୍ମଣ ଉବାଚ ।

ଏ ଯେ ସଂସାର ପ୍ରାଣୀମାନେ । ନୃପ ସେବକ ଭିନ୍ନେ ଭିନ୍ନେ ॥
କେହୁ କାହାକୁ ନମସ୍କାର । କରଇ ଅଗ୍ରୁ ବେଭାର ॥
ଏ ଜୀବମାନେ ବସି ତହିଁ । ନାନା କୁକଥାମାନ କହି ॥
ମୁଁ ନୃପ ବୋଲି ଅହଂକାର । ଏ ମୂଢ଼ ଲୋକଙ୍କ ବେଭାର ॥
ପ୍ରାଣୀଙ୍କି ଦଣ୍ଡ ଦେଇ ମୁହିଁ । ଏମନ୍ତେ ନାନା କଥା କହି ॥
ପାଗଲ୍‌ଭ ଭାବ ତୁ ତେଜିଲୁ । ଏଣୁ ମୋହର ସେବା କଲୁ ।୧୦।
ଦେଖ ଏ ଅଖିଳ ସଂସାର । ଜନ୍ମଇ ଯହିଁ ଚରାଚର ॥
ତାହାର ନାମ ଯହିଁ କ୍ଷରେ । ପଡ଼ନ୍ତି ନାହିଁ ଏ ସଂସାରେ ॥

ପରମହଂସ ହୃଦସ୍ଥଳ । ଏ ଅଛ ଯେତେକ ସକଳ ॥
ତା ବିନୁ ଅନ୍ୟ ନାହିଁ କେହି । ଅଜ୍ଞାନ ମତି ନ ଜାଣଇ ॥
ଗୃହସ୍ଥ କର୍ମ ଅଛ ଯେତେ । ଅଜୀବ ସଜୀବ ସହିତେ ॥
ଦ୍ରବ୍ୟ ସ୍ୱଭାବ କାଳ କର୍ମ । ପୃଥକ ଭାବ ଏହୁ ମନ ॥
ଜ୍ଞାନ ବିଶୁଦ୍ଧ ସେ ଅଟଇ । ପରମ ଆତ୍ମା ରୂପ ବହି ॥
ଏକୁ ଅନେକ ସର୍ବ ଦେହୀ । ସେ ବିନୁ ଅନ୍ୟ ନାହିଁ କେହି ॥
ସର୍ବଜ୍ଞ ପ୍ରଶାନ୍ତ ଅଚ୍ୟୁତ । ଲୀଳାରେ ଯା ନାଭି ଜଗତ ॥
ଯେ ପ୍ରଭୁ ଅଖିଳ କାରଣ । ମୁନିଏ କରନ୍ତି ଗାୟନ ।୩୦।
ଏବେ ତୁ ମୋହର ବଚନେ । ହରଷେ ଶୁଣ ସାବଧାନେ ॥
ବିବିଧ ତପ ଯଜ୍ଞ ଆଦି । ବେଦ ଅଧ୍ୟୟନ ପ୍ରସିଦ୍ଧି ॥
ଏ ଆଦି ଯେତେହେଁ ସୁଜନ । ସକଳ ଶ୍ରେଷ୍ଠ ଭଗବାନ ॥
ଯାର ସ୍ମରଣେ ପାପମାନ । ତତକ୍ଷଣେ ହୁଅନ୍ତି ଖଣ୍ଡନ ॥
ଉତ୍ତମ କଥା ଶ୍ଳୋକସାର । ଯେ ପ୍ରାଣୀ କରନ୍ତି ଉଚ୍ଚାର ॥
ଗ୍ରାମ୍ୟ କଥାରେ ତାର ମତି । କେବେହେଁ ନୋହେ ମହୀପତି ।
ଯେବେ ନିଶ୍ଚଳଭାବେ ମନ । ପ୍ରଭୁଙ୍କର କରଇ ଅର୍ପଣ ॥
ତାହାଙ୍କ ପ୍ରଭୁ ଭାବଗ୍ରାହୀ । ସତ୍ୟ ପ୍ରଧାନେ ମନ ଦେଇ ॥
ଏବେ ହେ ଶୁଣ ନୃପମଣି । ଆମ୍ଭର ପୂର୍ବଜନ୍ମ ବାଣୀ ॥
ଭରତ ନାମେ ରାଜା ମୁହିଁ । ବ୍ରହ୍ମାର ବଂଶେ ଜାତ ହୋଇ ॥
ସର୍ବ ସମ୍ପଦ ଦୂର କଲି । ନିଶ୍ଚଳେ ପ୍ରଭୁଙ୍କୁ ଭଜିଲି ॥
ପୂର୍ବର ମୋର କର୍ମଫଳ । ମୃଗ ସଙ୍ଗରୁ ମତି ଭୋଳ ॥
ଯେଣୁ ଅସାଧୁ ଆଚରିଲି । ମୃଗ ଶରୀର ମୁଁ ପାଇଲି ॥
ଯେଣୁ ମୋହର ପୁଣ୍ୟ ଥିଲା । ପ୍ରଭୁଙ୍କ କରୁଣା ହୋଇଲା ॥
ତେଣୁ ପୂର୍ବର କଥାମାନ । ମୋହର ହୋଇଲା ସ୍ମରଣ ॥
ଏବେ ହେ ଶୁଣ ନୃପବର । ଲଭିଲି ବ୍ରାହ୍ମଣ ଶରୀର ॥
ତେଣୁ ସଙ୍ଗକୁ ମୁହିଁ ଡର । ଏ ଜଡ଼ ରୂପକୁ ଆଦର ॥
ଭ୍ରମଇ ଏ ଭବସାଗରେ । କର୍ମ ବନ୍ଧନ ଖଣ୍ଡିବାରେ ॥
ଏକାନ୍ତ ନିଶ୍ଚଳ ଭାବରେ । ମନ ନିବେଶି କୃଷ୍ଣଠାରେ ॥
ଶୁଣ ସଜ୍ଜନ ଏକମନେ । ଏଣୁ ସଂସାରେ ପ୍ରାଣୀମାନେ ॥

ଅସଙ୍ଗ ସଙ୍ଗେ ମୋହ ହୋଇ । ନାନା ଯୋନିରେ ଭ୍ରମୁଥାଇ ॥
ସାଧୁଙ୍କ ସଙ୍ଗକୁ ଯାହାର । ପଡ଼ଇ ହୁଅଇ ଶରୀର ॥
ନଷ୍ଟଜନମତ ଯେବେ ନୋହି । ସଂସାର-ସାଗରେ ବୁଡ଼ଇ ॥
ସାଧୁ ସଙ୍ଗର ପ୍ରଭାବରେ । ପ୍ରଭୁର କୃପା ହୋଇ ତାରେ ॥
ସେ ଯେ ଅନାଦି ଚକ୍ରଧର । ଜଗତବନ୍ଧୁ ଦାମୋଦର ॥
ସେ ପ୍ରଭୁ ପାଦପଦ୍ମ ତଳେ । ମନ ନମା ରହିବ ନିଶ୍ଚଳେ ॥
କହଇ ବିପ୍ର ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ । ୫୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ରହୂଗଣ-
ବ୍ରାହ୍ମଣ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।



## ତ୍ରୟୋଦଶ ଅଧ୍ୟାୟ ।

ତ୍ରୟୋଦଶେଽବରକ୍ତାୟ ବୃଥାତତ୍ତ୍ୱନିରୂପଣଂ ।
ଇତି ବୈରାଗ୍ୟଦାର୍ଢ୍ୟାୟ ଭବାଟବ୍ୟୁପବର୍ଣ୍ଣ୍ୟତେ ॥

ବ୍ରାହ୍ମଣ ଉବାଚ ।

ଯେ ପଥ ଅତ୍ୟନ୍ତ ଦୁର୍ଗମ । ମାୟାରେ ତହିଁ ହୋଇ ଭ୍ରମ ॥
ରଜତମରେ ଭିନ୍ନ ମତ । ପଥିକୀ ଭାବେ କର୍ମ ଚିନ୍ତ ॥
ସେ ପ୍ରାଣୀ ସଂସାରେ ଭ୍ରମଇ । ସୁଖର ଲେଶ ତାର ନାହିଁ ॥
ଏ ଯେ ସଂସାର ମହାଘୋର । ନାନା ଦୁସ୍ତର ଭୟଙ୍କର ॥
ଏଥେ ଅଛନ୍ତି ଦୁଷ୍ଟମନ । ନାନା ଯାତନାର ଯେ ସ୍ଥାନ ॥
ଉଡ଼ଣ ବାତ ରେଣୁ ଲାଗି । ଟେକେ ଚକ୍ଷୁ ବୁଜି ଦୁଃଖଭାଗୀ ॥
ଚଢ଼ଧ ଘୋରସ୍ୱନ ଲାଗି । କଷ୍ଟେ ହୋଇବ ଦୁଃଖଭାଗୀ ॥
ଉଲ୍ଲୁକ ଅଦ୍ଧ ଘୋର ବାଣୀ । ଦୁଃଖିତ ଅମା ତାହା ଶୁଣି ॥
କ୍ଷୁଧା ପୀଡ଼ିତ ଯେବେ ହୋଇ । ନିଷ୍ଫଳ ବୃକ୍ଷକୁ ଧାଅଇ ॥
କେତେବେଳେ ମୃଗତୃଷ୍ଣା ଦେଖି । ଜଳର ପ୍ରାପ୍ତେ ଉପଲକ୍ଷି । ୧୦ ।
ନିରଣ ନହୋଇଣ ତହିଁ ରେ । ଧାଅଇ ଶୁଷ୍କ ନଦୀଗରେ ॥
ଅନ୍ୟାନ୍ୟ ଭାବକୁ ସେ ବନ୍ଧ । ନିର୍ଧନ ପ୍ରାଣୀଙ୍କି ମାଗଇ ॥
ଦାର ତନୟ ଅଗ୍ନି ପ୍ରାୟେ । ତହିଁ କ୍ରୀଡ଼ଇ ମାୟାମୋହେ ॥

କେବେହେଁ ଶାନ୍ତି ନ ଭଜଇ । ପୁଣି ଉଦ୍‌ବେଗ ମନ ହୋଇ ॥
ବିବିଧ ଶୋକ ଦୁଃଖ ପାଇ । ପରମ କ୍ଲେଶକୁ ଲଭଇ ॥
ଗନ୍ଧର୍ବପୁରେ ପ୍ରବେଶିଣ । ପ୍ରମୋଦ ଲଭେ ଅନୁକ୍ଷଣ ॥
କଣ୍ଟକ ଦୁର୍ଗମ ପାଷାଣେ । ଉନ୍ମତେ ଭ୍ରମେ ଅକାରଣେ ॥
ବିମନ ହୋଇ ଦୁଃଖ ପାଇ । କ୍ଷଣକେ ପୁଣି ପାସୋରଇ ॥
ଅନ୍ତର ବାହାରେ ସଞ୍ଚିତ । ପ୍ରାଣୀ ହୁଅନ୍ତି ଅଭିଘାତ ॥
କ୍ଷୁତ୍‌ତୃଷ୍ଣା ପାଇ ଏତେ ତାପ । ଉଦେଷ ସଂବସରେ ପ୍ରାପ୍ୟ ॥
ଦୁଷ୍ଟ ଜନ୍ତୁରେ ପୀଡ଼ା ପାଇ । ଉପିନେ ନରକେ ଭ୍ରମଇ ॥
ଅନ୍ଧ ଯେସନେ ଅନ୍ଧକୂପେ । ପଡ଼ଇ କର୍ମର ବିପାକେ ॥
କ୍ଷଣକେ ପୁଣ ପାସୋରଇ । ପଡ଼ଇ ଗିରିକନ୍ଦେ ଯାଇ ॥
ଅଜ୍ଞାତତତ୍ତ୍ୱକୁ ସେ ନ ଜାଣି । କ୍ଷଣକେ ପାସୋରଇ ପୁଣି ॥
ମାୟାରୁ ଜାତ ଏ ସଂସାର । ଦୁର୍ଗମ ପଥ ଯେ ଏହାର ॥
ସଜୀବ ଅମ୍ବା ହୋଇ ତୁଲ୍ୟ । ଜାଣଇ ପ୍ରାଣୀ ମନ୍ଦ ଭଲ ॥
ହରି ସେବାରେ ମନ ଦେଇ । ଯେ ପ୍ରାଣୀ ସଂସାରେ ଭ୍ରମଇ ॥
ଜ୍ଞାନ ଯେ ଠାକୁର ଈଶ୍ୱର । ନିଶ୍ଚିନ୍ତେ ହୋଏ ଭବୁଁ ପାର ॥

## ରହୂଗଣ ଉବାଚ ।

ସାଧୁମାନଙ୍କ ଜନ୍ମ ସାର । ସଂସାରେ କିବା ଜନ୍ମ ଆର ।୩୦।
ଯେ ଜନେ ହୃଷୀକେଶ ଗୁଣ । ବଦନେ କରେ ଉଚ୍ଚାରଣ ॥
ଶ୍ରବଣେ ଶୁଣି ଯଶ ଗାଇ । ସୁସାଧୁ ସଙ୍ଗତେ ମିଳଇ ॥
ହେ ସ୍ୱାମି, ତୁମ୍ଭ ପଦ-ରେଣୁ । ମୋ ଦେହେ ଲାଗିଲା ଯେଣୁ ॥
ସର୍ବ ଦୁରିତ କ୍ଷୟ ଗଲା । ନିର୍ମଳ ମୋ ମନ ହୋଇଲା ॥
ଅବିଦ୍ୟା କର୍ମ ଯେ ମୋହର । [illegible] ସ୍ୱାମି ସମାଗମ ତୋର ॥
ଅବିଦ୍ୟା ଅବିବେକମାନେ । ହତ ହୋଇଲେ ତୋର ପୁଣ୍ୟେ ॥
ତୋତେ ମୋହର ନମସ୍କାର । ଏ ବହୁ ରୂପ ଯେ ତୋହର ॥
ଅବଧୂତ ରୂପକୁ ଧରି । ପୃଥିବୀ ପର୍ଯ୍ୟଟନ କରି ॥
ଏମନ୍ତ କହିଣ ରାଜନ । ବନ୍ଦିଲା ବିପ୍ରଙ୍କ ଚରଣ ॥
ରାଜାର ପ୍ରଜାକୁ ପେନିଲେ । ଧରଣୀ ଭ୍ରମଣେ ଗମିଲେ ।୪୦।
ଏ ରୂପ ଧରି ଯେ ବ୍ରାହ୍ମଣ । ପୃଥିବୀ କରେ ପର୍ଯ୍ୟଟନ ॥

ସଂସାର କୁଶଳ ନମନ୍ତେ । ଭ୍ରମେ ଭ୍ରମନ୍ତି ଏ ଯେ ଜନ୍ତେ ॥
ଏମନ୍ତେ ରହୂଗଣ ବାଣୀ । ଆନନ୍ଦ ଶୁଣି ବିପ୍ରମଣି ॥
ପରମକରୁଣା ସେ ବନ୍ଧୁ । ରହୂଗଣକୁ ତତ୍ତ୍ୱ କହୁ ॥
ହରଷ ହୋଇ ରହୂଗଣ । ପରମ ତତ୍ତ୍ୱ ଯେ ପାଇଣ ॥
ଆତ୍ମ ଅବଦ୍ୟା ଧ୍ୟାନ ଯେତେ । ଦେହ ଅହଂକାର ସମେତେ ॥
ତକ୍ଷଣେ ଛାଡ଼ିଲା ସକଳ । ଶୁଣ ପରୀକ୍ଷ ମହୀପାଳ ॥
ଭାଗବତ ଆଶ୍ରୟ ଜନ । ଏତେ ପ୍ରଭାବ ହେ ସୁଜନ ॥

ପରୀକ୍ଷିଦୁବାଚ ।

ବହୁ ପ୍ରକାରେ ଏ ସଂସାରେ । ଏ ଭାଗବତ ଶ୍ରେଷ୍ଠ କରେ ॥
ଏହାଙ୍କ ବାକ୍ୟ ଅନୁସରି । ଯେ ପ୍ରାଣୀ ସଂସାରରୁ ତରି ॥
ତାହାଙ୍କୁ କି ଗତି ଅପରେ । ଗତି ଅଟନ୍ତି କିବା କରେ ॥
ଏ ଅନନ୍ତରେ ନୃପବରେ । ଏଥୁ ଦୁର୍ଗମ ଯେ ଅପରେ ॥
ତାହାର ସଂଘଟନ ଯେତେ । ସକଳ ମୋହର ଅଗ୍ରତେ ॥
ତୁ ଅନୁଗ୍ରହ କରି କହ । ମୋହର ତୁଟିବ ସନ୍ଦେହ ॥
ସେ ଭୂପ ରହୂଗଣ ବାଣୀ । ଆନନ୍ଦେ ଶୁଣ ନୃପମଣି ॥
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ । ଘୋର ସଂସାର ଯାନ୍ତି ଜିଣି ॥
ସକଳ ପାପୁ ସେ ତରନ୍ତି । ଅନ୍ତେ ସେ ମୁକତି ଲଭନ୍ତି ॥
କହଇ ବିପ୍ର ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ରହୂଗଣ-
ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ ।

ଚତୁର୍ଦ୍ଦଶେ ଭବାରଣ୍ୟେ ରୂପକବ୍ୟାକୃତି କୃତା ।
ପ୍ରସ୍ଫୁଟେ ଦସ୍ୟୁ ଗୋମାୟୁ ମଶକାଦ୍ୟଥ କଲ୍ପନୈଃ ।

ଶ୍ରୀ ଶୁକ ଉବାଚ ।

ଶୁକ ବୋଇଲେ ହେ ସୁଜନ । ଶୁଣ ତା ହୋଇ ସାବଧାନ ॥
ଦେହାଭିମାନେ ଯେଉଁ ନର । ସତ୍ତ୍ୱାଦି ଗୁଣ ଅହଂକାର ॥

କୁଶଳ ଅକୁଶଳ ଦୁଇ । ଏଥେ ନିର୍ମିତ ସେ ହୁଅଇ ॥
ବିବିଧ ନରଦେହ ବନ୍ଧ । ସଂଯୋଗ ବିୟୋଗ କରଇ ॥
ପାପନିର୍ମିତ ଏ ସଂସାରେ । ରହଇ ନିନ୍ଦିତ କର୍ମରେ ॥
ଭଗବାନ ପ୍ରଭୁ ଈଶ୍ୱର । ଯେ ବିଷ୍ଣୁ ଅଖିଳ ଠାକୁର ॥
ଏହା ମାୟାରେ ବଶ ହୋଇ । ଏ ଜୀବ କିଛି ନ ଜାଣଇ ॥
କର୍ମଶୂନ୍ୟ ଦେହନିର୍ମିତ । ଏହାର ଅନୁଭବ ମତ ॥
ଶ୍ମଶାନ ପ୍ରାୟେ ଏ ଅଟଇ । ଏହାକୁ ମୂଢ଼ ନ ଜାଣଇ ॥
ଘୋର ନରକ ଏ ସଂସାର । ଏଥିରେ ରହେ ମୂଢ଼ନର ।
ବିବିଧ ବିଫଳ ଯେ କର୍ମ । ତେଣୁ ହୁଅଇ ମତିଭ୍ରମ ॥
ପ୍ରଭୁଙ୍କ ଚରଣାରବିନ୍ଦ । ସୁସ୍ୱାଦୁ ଗନ୍ଧ ମକରନ୍ଦ ॥
ଏହାଙ୍କୁ ଅଶ୍ରୟ ଯେ କର । ଅଛନ୍ତି ସେ ପାଦ ଆବୋର ॥
ପାପ ଧ୍ୱଂସଇ ସୁଖ ଦେଇ । ଏମନ୍ତ ପଦ ନ ସେବଇ ॥
ସେ ପଦ ଅଶ୍ରୟ ନ କର । ଭ୍ରମନ୍ତି ମାୟାକୁ ଆବୋର ॥
ଏ ଦେହରେ ଇନ୍ଦ୍ରିୟଗଣ । ନାନା ଉପଭୋଗ କାରଣ ॥
ଗ୍ରାମ୍ୟ ଭୋଗରେ ହେଲ ହୋଇ । ଅର୍ଜିତ ଯେତେ ଅର୍ଥ ଦେଖି ॥
କରନ୍ତି ଅର୍ଥ ପୁଣ୍ୟତରେ । ଏଣୁ ସେ ପୁଣ୍ୟ ନୃପବନ୍ତର ॥
ଅଥବା କୁଟୁମ୍ବ ବିଷୟେ । ଅପତ୍ୟ ସ୍ନେହ ମାୟାମୋହେ ॥
କଦର୍ଯ୍ୟ କୁଟୁମ୍ବ କାରଣ । ମୋହେ ହୁଅନ୍ତି ହତଜ୍ଞାନ ।
ଅସତ୍ୟସଙ୍ଗ ଯେଉଁ ନର । ଲଭଇ ପାଷଣ୍ଡ ଶରୀର ॥
ଦାର ତନୟ ଗୃହେ ଥାଇ । କେବେହେଁ ସୁଖ ନ ଲଭଇ ॥
ଯେବେ ସେ ରାଜା ହରେ ଧନ । ନାନାକ୍ଳେଶରେ ଦୁଃଖମନ ॥
ଜୀବନ ମୃତ୍ୟୁ ପ୍ରାୟେ ହୋଇ । କେ ଅବା କ୍ଷଣେ ଶ୍ୱାସ ପାଇ ॥
କେବେହେଁ ଦେହ ମିଥ୍ୟା ମାନି । ନିବର୍ତ୍ତମନ ନୋହେ ପ୍ରାଣୀ ॥
ନିଦ୍ରାରେ ସ୍ୱପ୍ନପ୍ରାପ୍ତ କରି । ତକ୍ଷଣେ ପୁଣି ସେ ପାସୋରି ॥
ଯେ ଧରେ ଦେହ ଗୃହାଶ୍ରମ । ଜନ୍ମ ଲଭଇ ମାୟାଭ୍ରମେ ॥
ପାପ-ଅନଳେ ଦେହ ଧରି । ନିତ୍ୟେ ଭ୍ରମଇ କର୍ମ ସାରି ॥
ଲୌକିକ ବ୍ୟସନ ନିମିତ୍ତ । କ୍ଷଣ କ୍ଷଣକେ ଦୁଃଖଚିତ୍ତ ॥
କଣ୍ଟକ ଦୁର୍ଗମ ପର୍ବତେ । ନିତ୍ୟେ ଭ୍ରମଇ ଦୁଃଖଚିତ୍ତେ ।

ଶ୍ମଶାନେ ଶବ ପ୍ରାୟେ ହୋଇ । ସୁଖ କି ଦୁଃଖ ନ ଜାଣଇ ॥
ଦୁର୍ଗମ ଦ୍ୱନ୍ଦ୍ୱ ଦୁଃଖ କର । ଉଲ୍ଲଙ୍ଘିବାକୁ ଅଚର ॥
ବ୍ୟଥିତ ହୃଦୟକୁ ପାଇ । ଅଳ୍ପ ଦୋଷସନେ କଷ୍ଟ ଦେଇ ॥
ଅଜ୍ଞାନଭାବୁଁ ପାପ ଚଳେ । ତମେ ପଡ଼ଇ ପ୍ରାଣୀ ଅନ୍ତେ ॥
କେବେହେଁ ନ କରେ ପ୍ରଧାନ । ସ୍ୱକାମେ ହରେ ପ୍ରାଣୀ ମନ ॥
ସ୍ୱାମୀରେ ଦ୍ରୋହ ଚିନ୍ତା କରେ । ଦୁର୍ଗମ ନରକ ଅଘୋରେ ॥
ଏମନ୍ତେ ଥିବା କର୍ମଫଳେ । ପ୍ରାଣୀ ଭ୍ରମନ୍ତି ଏ ଶସ୍ତୁଳେ ॥
ଜନ୍ମ ବାସନା ଫଳେ ବାର । ପୁଣି ଜନ୍ମଇ ଏ ସଂସାର ॥
ଶୁଣ ରାଜନ ଏକମନ । ଯେବେ ଏ କର୍ମେ କର୍ମମାନ ॥
ଛେଦନ୍ତି ହରି ଅଶେଷ କର । ତେବେ ସେ ଭବୁଁ ଯାନ୍ତି ତର ॥
କେବେହେଁ ନାନାମତ ବାଦେ । ଦେବର ଅଦ୍ଭୁତ ସମ୍ପଦେ ।୪୯।
କେବେହେଁ ହୃଦେ ନ ଚିନ୍ତିବ । ବିଷ୍ଣୁର ପାଦେ ମନ ଦେବ ॥
ଅନ୍ୟର ଧନ ଅନ୍ୟେ ନେଇ । ସ୍ୱଭାବେ କର୍ମ ନ ଜାଣଇ ॥
ଏ ଯେ ସଂସାର ହେଉ ରପଥେ । ନାନା ଉପବର୍ଗ ସହିତେ ॥
ଏହା ଆଶ୍ରୟ କରି ପ୍ରାଣୀ । ଏ ସବୁ ଅନୁଭବ ଜାଣି ॥
ଶୋକ ଲୋଭାଦି ମୋହମାନ । ମାତ୍ସର୍ଯ୍ୟ କ୍ରୋଧ କ୍ଷୁଧା ଜନ୍ମ ॥
ପାପାତ୍ମା ଅଧି ବ୍ୟାଧି ଯେତେ । ଜରା ମରଣାଦି ସହିତେ ॥
ଦେବମାୟାରେ ମୋହ ହୋଇ । ନାରୀର ବଶ ଭାବ ବହି ॥
ଅମୃତ ଲତାରେ ବନ୍ଧନ । ତହିଁରେ ମନ ହୋଏ ଛନ୍ନ ॥
ତା ଅବଲୋକନେ ବିହାର । ତେଣେ ଅସକ୍ତ ମୂଢ଼ନର ।୫୦।
ସୁତ ଦୁହିତାର ବଚନେ । ଚିତ୍ତ ନିବେଶେ ଅନୁକ୍ଷଣେ ॥
ହୃଦରେ ହରଷିତ ହୋଇ । ଅଙ୍କକୁ ତହିଁରେ ବସାଇ ॥
ଅବଧ ଆତ୍ମା ଯେ ଅଟନ୍ତି । ଜୀବକୁ ନରକେ ପକାନ୍ତି ॥
କେବେହେଁ ନର୍କରେ ପୀଡ଼ିତ । ସନ୍ଧିଁ ବୁଡ଼ାଇ ନିତ୍ୟ ଚିତ୍ତ ॥
ଯେ ପ୍ରଭୁ ଅଖିଳ ଈଶ୍ୱର । ବିଷ୍ଣୁ ଭଗବାନ ଠାକୁର ॥
ଯାହାର କାଳଚକ୍ରେ କର । ଅତ୍ମାର ଶତ୍ରୁକୁ ନିବାର ॥
ସକଳେ ବଶହି ଯାହାର । ଏମନ୍ତେ ପ୍ରଭୁ ଯେ ଈଶ୍ୱର ॥
ଯାହାର କାଳଚକ୍ର କରେ । ଭ୍ରମଇ ଅଖିଳ ସଂସାରେ ॥

ଯେ ଯଜ୍ଞପୁରୁଷ ଠାକୁର । ତାହାଙ୍କୁ କରୁ ଅନାଦର ॥
ଆତ୍ମାର ଗତି ନ ବିଚାର । ବିବିଧ କୁପଥ ଆଚର ।
ନିଗମ ଅକାରଣ କର୍ମ । କରନ୍ତି ହୋଇ ମତିଭ୍ରମ ॥
ପାଷଣ୍ଡଭାବରେ ବିହିତ । ଆତ୍ମାକୁ କରନ୍ତି ବଞ୍ଚିତ ॥
ମୈଥୁନଭାବ ଅନୁଷଣେ । ଆକୁଳ କୁଟୁମ୍ବ ପୋଷଣେ ॥
ଅଜ୍ଞାନ ପାଷଣ୍ଡ ବେଭାରେ । ନିରତେ ବିଷୟ ବିହାରେ ॥
ଅତି କୃପଣବୁଦ୍ଧି ହୋଇ । ଅନ୍ୟୋନ୍ୟେ ସ୍ନେହଭାବ ବହି ॥
ଗୁଣ ବିହାର ଅନୁଷ୍ଠେଣ । ଇତ୍ୟାଦି କର୍ମେ ପଥଶ୍ରମେ ॥
ବିସ୍ମିତ କାମ ପାଏ ତହିଁ । ଆନନ୍ଦେ ସୁଖରେ ଭ୍ରମଇ ॥
ବାନର ପଶୁଏ ଯେସନେ । ନିବସି ବୃକ୍ଷମାନ ଭିତେ ॥
ଦାରତନୟ ପୋଷିବାରେ । ପଶନ୍ତି ଗିରି ଯେ କନ୍ଦରେ ॥
ଶୀତ ତପନ ଦୁଃଖମନ । ଦେହର ଉଦ୍ଭୂତ ବ୍ୟସନ ।
ଦୁସ୍ତର ଚିନ୍ତାମଗ୍ନ ହୋଇ । ବିଷଣ୍ଣଭାବରେ ରହଇ ॥
ଦ୍ରବ୍ୟ ସଂଗ୍ରହରେ ସେ ସ୍ୱଭାବ । କ୍ଷୀଣ ଧନରେ ଅଳ୍ପ ଲାଭ ॥
କେବେହେଁ ଉପଭୋଗ ତାର । ଦ୍ରବ୍ୟ ବିଷାନେ ହୋଏ ଦୂର ॥
ପୁଣି କେବେହେଁ ମନୋରଥ । ଦ୍ରବ୍ୟ ଲାଳସେ ଉପଗତ ॥
ପୁଣି କେବେହେଁ ଦ୍ରବ୍ୟପାଇଁ । ମତି ତାହାର ଭ୍ରଷ୍ଟ ହୋଇ ॥
ସୂକ୍ଷ୍ମ ବିହାର ଆଦି ଯେତେ । ଅଛଇ କଳଙ୍କ ସହିତେ ॥
ଏମନ୍ତେ ଚିତ୍ତବୃତ୍ତି ସଙ୍ଗେ । ବୁଡ଼ଇ ସ୍ନେହ ଅନୁରାଗେ ॥
ତେଣୁ ସେ ପୁଣ୍ୟ ବାସନାରେ । କହଇ ବିବିଧ ପ୍ରକାରେ ॥
ତେଣୁ ସଂସାର-ପଥେ ନର । ନାନା କ୍ଲେଶ ବ୍ୟାଧି ଶରୀର ॥
ପୁଣି ଜନମି ନାଶ ଯାଇ । ନାନାଦି ବିପଦ ଭୁଞ୍ଜଇ ।
ବିବିଧ ଶୋକ ମୋହ ତାର । ଦ୍ୱନ୍ଦ୍ୱ ପାଷଣ୍ଡେ ଯେ ଶରୀର ॥
ଅସାଧୁ ବନ୍ଧନେ ବନ୍ଧାଇ । ସେ ପଥ ପାର ନ ଦେଖଇ ॥
ଯେ ପଥ ଅତ୍ୟନ୍ତ ନିର୍ମଳ । ସୁସାଧୁ ନର ଯହିଁ ଠୁଳ ॥
ଅସାଧୁ ନର ସ୍ଥାନ ହୋଇ । ସେ ଫଳ ପାର ନ ଦେଖଇ ॥
ମାୟାକୁ ପରିହାର କର । ଯେ କର୍ମେ ଅନୁକୂଳ ସର ॥
ଆପଣୁ ନରକୁ ବିମୁକ୍ତ । ଯାହାକୁ ଭାବନ୍ତି ଜଗତ ॥

ଅଗ୍ରତ ରାଜା ଋଷିଙ୍କର । ପଥ ଯେ ଅତି ଅଗୋଚର ॥
ପ୍ରାଣୀର ମନୋରଥ-ପଥେ । ଅଗମ୍ୟ ଅଟଇ ପୃଥ୍ବୀତେ ॥
ଗରୁଡ଼ପତି ବ୍ରହ୍ମା ଯହିଁ । ସଚ୍ଚିଦାନନ୍ଦ ରୂପ ତହିଁ ॥
ଦୁହିତା ସୁତ ରାଜ୍ୟ ଧନ । ଯେ ଏଥିଁ ଦୂର କରେ ମନ ॥
ଯେ ଏହା ତୃଚ୍ଛ ପ୍ରାପ୍ତେ ବୁଝେ । ଉତ୍ତମ ଶ୍ଳୋକ ପାଦେ ଭଜେ ॥
ଏହାଙ୍କ ଯେ ରାଜସମ୍ପଦ । ତ୍ରିଦଶମାନଙ୍କ ଦୁର୍ଲଭ ॥
ଏହା ନ ଦେଖି ସାଧୁଜନ । ମହତ ପୁରୁଷ ଅଧୀନ ॥
ସେ ପାଦେ ଭକ୍ତିଭାବ ବନ୍ଧ । ଅଛନ୍ତି ମନକୁ ବଢ଼ାଇ ॥
ଏ ଯଜ୍ଞ ଧର୍ମ ତପୋମୟ । ଛାଡ଼ି ନିର୍ଗୁଣ ଯୋଗ ଦେହ ॥
ସାଂଖ୍ୟ ଯୋଗରେ ଯେହୁ ସାର । ଯେ ବ୍ରହ୍ମ ପ୍ରକୃତି ଈଶ୍ବର ॥
ଯେ ନାରାୟଣ କୃଷ୍ଣ ହରି । ଏମନ୍ତ ନାମ ମୁଖେ ଧରି ॥
ଛାଡ଼ିଲେ ମୃଗ କଳେବର । କି ଅବା ଦେବା ପଟାନ୍ତର ॥
ଏହା ଯେ ଶୁଣେ ଶ୍ରଦ୍ଧାଚିତ୍ତେ । ଏ ଗୁଣ କର୍ମ ଭାଗବତେ ॥
ବିଶୁଦ୍ଧ ଭରତ ଚରିତ । ଯେ ଜନ ପଢ଼ନ୍ତି ଅବିରତ ।୧୦୦।
ଆୟୁଷ ଯଶ ଧନ ତାର । ହୁଅଇ ମଙ୍ଗଳ ଅପାର ॥
ଏହା ଯେ ଶୁଣେ ଶ୍ରଦ୍ଧାଚିତ୍ତେ । ଭରତ ଜ୍ଞାନ ଅନୁମତେ ॥
ପ୍ରଭୁ ଚରଣେ ଭକ୍ତି ତାର । ଅଶେଷ ପାପୁଁ ହୋଏ ପାର ॥
ପ୍ରଭୁ ପଦାରବିନ୍ଦ ଘେନି । ମୋ ମନ ରହୁ ଅବିରତେ ॥
କହଇ ଦାସ ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ।୧୦୫।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭରତ-
ଉପାଖ୍ୟାନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



## ପଞ୍ଚଦଶ ଅଧ୍ୟାୟ ।

ଶ୍ରୀ ଶୁକ ଉବାଚ ।

ଏବମଷ୍ଟଭିରଧ୍ୟାୟୈର୍ଭରତସ୍ୟୋକ୍ତମିହତଂ ।
ତତଃ ପଞ୍ଚଦଶେ ତସ୍ୟ କୀର୍ତ୍ତ୍ୟନ୍ତେ ବଂଶଜା ନୃପାଃ ।

ଶୁଣ ପରୀକ୍ଷ ନୃପବର । ସୁମତି ଭରତ କୁମର ॥
ଅବରେ ତାହାର ତନୟ । ଋଷଭ ପଥ ସେ ଆଶ୍ରୟ ॥

କହିବ କଳିଯୁଗ ଧର୍ମ । ପାପିଷ୍ଠ ନାନା କର୍ମମାନ ॥
ସୁମତିପତ୍ନୀଠାରେ ସୁତ । ହୋଇଲା ନାମ ଦେବଜିତ ॥
ତାହାର ହୋଇଲା କୁମର । ଦେବଦ୍ୟୁମନ ନାମ ତାର ॥
ପରମେଷ୍ଠୀ ଯେ ତା କୁମର । ଜନ୍ମିଲା ଧେନୁମତିଠାରୁ ॥
ସୁବର୍ଚ୍ଚଳାଠାରେ ତାହାର । ଜନ୍ମିଲା ପ୍ରତୀହ କୁମର ॥
ଏ ଆତ୍ମବିଦ୍ୟାମତେ କରି । ଭଜିଲେ ପ୍ରଭୁ ନରହରି ॥
ତାହାର ଅଜଭୂମା ନାମ । ତନୟ ହୋଇଲା ଜନମ ॥
ପ୍ରତିହର୍ତ୍ତା ସେ କୁମର । ଜନ୍ମିଲେ ସତ୍ୟାର-ଗର୍ଭର ॥୧୦॥
ଭୂମାର ଉଦଗୀଥ କୁମର । ଜନ୍ମିଲେ ଋଷିକୁଲ୍ୟାଠାର ॥
ଦେବନା କନ୍ୟାଠାରେ ତାର । ଜନମ ହୋଇଲା କୁମର ॥
ଦେବକୁଲ୍ୟାର ଗର୍ଭେ ତାର । ହୋଇଲା ପ୍ରସ୍ତାବ କୁମର ॥
ଘାରୁସ୍ତ୍ରା ଗର୍ଭରୁ ତାହାର । ହୋଇଲା ଏକଇ କୁମର ॥
ରତିଠାରେ ଯେ ତାହାର । ପୃଥୁଷେ ହୋଇଲା କୁମର ॥
ଅକୁତିଠାରେ ତା'ର ସୁତ । ମୁକ୍ତସେନ ନାମେ ବିଦିତ ॥
ଉଦାଶବା ଯେ କୁମର । ହୋଇଲା ଶୁଣ ନୃପବର ॥
ସେ ବିଷ୍ଣୁ ଅଂଶକୁ ବହଇ । ନାନାଲକ୍ଷଣେ ପୂର୍ଣ୍ଣ ହୋଇ ॥
ସ୍ୱଧର୍ମେ ପ୍ରଜାପାଳନରେ । ମନ ତାହାର ନିରନ୍ତରେ ॥
ଯେ ମହାପୁରୁଷ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥
ଅନାଥନାଥ ନିରାକାର । ଯେ ସର୍ବଦେବତା ଈଶ୍ୱର ॥
ତାହାଙ୍କ ତତ୍ତ୍ୱେ ମନ ଥୋଇ । ପରମତତ୍ତ୍ୱ ଭାବ ବହି ॥
ସାତ୍ତ୍ୱିକଧର୍ମ ମତି ହୋଇ । ଆନନ୍ଦେ ପାଳଇ ସେ ମହୀ ॥
ତାହାର ଗୁଣ ମହୀତଳେ । ଗାୟନ କରନ୍ତି ସକଳେ ॥
ଏହାର ସମ କେ ସଂସାରେ । ଯଜ୍ଞାଦି କର୍ମ କରିବାରେ ॥
ତାହାର ଭକ୍ତି ଭାବୁଁ କରି । ବଶ ହୋଇଲେ ନରହରି ॥
ତାହାଙ୍କୁ ଦକ୍ଷକନ୍ୟା ବରି । ଆନନ୍ଦେ ଅଭିଷେକ କରି ॥
ସକଳ ତୀର୍ଥଜଳ ନେଇ । ରାଜଭୂଷଣ ତାଙ୍କୁ ଦେଇ ॥
ରାଜ୍ୟରେ ପ୍ରଜା ସୁଖ ପାଇ । ଅମୃତ ଶସ୍ୟ ଦେଲେ ମହୀ ॥
ମହୀରେ ଯେତେ ନୃପବର । ଝଟନ୍ତି ପଦ୍ମରେ ତାହାର ॥

ସଂଗ୍ରାମେ ଯାହାର ଚରିତ । ସ୍ତୁତି କରନ୍ତି ସୁରବୃନ୍ଦ ॥
ତାହାର ଯଜ୍ଞମାନଙ୍କରେ । ସନ୍ତୋଷ ହେଲେ ଦେବବରେ ॥
ସୂର୍ଯ୍ୟାଦି ଗ୍ରହଗଣ ଯେତେ । ସନ୍ତୋଷ ହୋଇଲେ ସମସ୍ତେ ॥
ଏଥୁଅନ୍ତେ ହେ ପରୀକ୍ଷିତ । ତାହାର ହେଲେ ତନୟୁତ ॥
ସୁଗତି ଚିତ୍ରରଥ ନାମ । ଭୁଣ୍ଡାୟୁ ଯେ ଅବରୋଧନ ॥
ଚିତ୍ରରଥର ପତ୍ନୀଠାରେ । ଜନ୍ମିଲେ ସମ୍ରାଟ ନାମରେ ॥
ଉତ୍କଳା ପତ୍ନୀ ଯେ ତାହାର । ମରୀଚି ହୋଇଲା କୁମର ॥
ତା ପତ୍ନୀ ବିନ୍ଦୁମତୀଠାରେ । ବିନ୍ଦୁମାନ ହେଲା କୁମରେ ॥
ବିନ୍ଦୁମାନର ଯେ କୁମର । ମଧୁ ହୋଇଲା ନୃପବର ॥
ବୀରବ୍ରତ ତାର କୁମର । ଭୋଜା ନାମରେ ପତ୍ନୀ ତାର ॥
ତାହାର ତହୁଁ ଦେନି ସୁତ । ମନ୍ଥୁ ପ୍ରମନ୍ଥୁ ଯେ ବିଦିତ ।୪୧।
ମନ୍ଥୁର ସତ୍ୟାଠାରେ ତହୁଁ । ଭୌବନ ହୋଇଲା ତନୟୁ ॥
ଦୂଷଣା ପତ୍ନୀଠାରେ ତାର । ତ୍ୱଷ୍ଟା ନାମରେ ଯେ କୁମର ॥
ବିରୋଚନାର ତହୁଁ ତାର । ବିରଜ ହୋଇଲା କୁମର ॥
ଶୁଣ ରାଜନ ପରୀକ୍ଷିତ । ବିରଜ ପୁତ୍ର ହେଲେ ଶତ ॥
ତାହାଙ୍କ ମଧ୍ୟେ ଶ୍ରେଷ୍ଠବର । ଶତଜିତ ଯେ ପୁତ୍ର ତାର ॥
ବିଷୂଚି ପତ୍ନୀଠାରେ ତାର । କନ୍ୟା ଗୋଟିଏ ଯେ ଅପର ॥
ଯେଣୁ ଏ ଲୋକେ ହୋଇ ଜାତ । ଶୁଣ ରାଜନ ପରୀକ୍ଷିତ ॥
ପ୍ରିୟବ୍ରତର ବଂଶମାନ । ଚରିତେ ଏ ଭରୁଁ ରାଜନ ॥
ବିଦିତ ହେଲେ ଜନମାନେ । ତୁଷ୍ଟ ଭକତ ବଦ୍ୟମାନେ ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ।୫୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ପ୍ରିୟବ୍ରତ-
ରାଜବଂଶ ବର୍ଣ୍ଣନେ ନାମ ପଞ୍ଚଦଶୋଽଧ୍ୟାୟଃ ।



## ଷୋଡ଼ଶ ଅଧ୍ୟାୟ ।

ଧ୍ରୁବାକ୍ତ ଦ୍ୱୀପ ସନ୍ଦାଂ ନାନଂ ତଦ୍ଭୂତସ୍ୱରୂପତଃ ।
ପୃଷ୍ଟଂ ସବକ୍ତୁ ମାବିର୍ଯ୍ୟା ସଖାଧାସ୍ତି ଚିତଃପରଂ ॥

ଷୋଡ଼ଶେଽଥ ସ୍ତୁଥା ଶ୍ରେର୍ଣ୍ଣଂ ପରିତଃ ସନ୍ନିବେଶତଃ ।
ମେରୋଃସ୍ଥିତ ମର୍ଯ୍ୟାକଞ୍ଜ କର୍ଣ୍ଣିକେବୋପବର୍ଣ୍ଣ୍ୟତେ ॥
ପ୍ରିୟବ୍ରତ ରଥନେମ୍ୟୁକ୍ତାବୁକ୍ତାଦ୍ୱୀପାବ୍ଧି କଳ୍ପନା ।
ତଦ୍ୱିଶେଷ ବିଜଜ୍ଞାସୁ କଥାନ୍ତେ ପରିପୃଚ୍ଛତି ।

ରାଜୋବାଚ ।

ଏ ଭୂମିମଣ୍ଡଳ ବିସ୍ତାର । ତୁମ୍ଭେ କହିଲ ମୁନିବର ॥
ଯାବତ ସୂର୍ଯ୍ୟର ପ୍ରକାଶ । ନକ୍ଷତ୍ର ଚନ୍ଦ୍ରଙ୍କର ବାସ ॥
ପ୍ରିୟବ୍ରତଙ୍କ ଆଚରଣ । ଯାବତ କରିଛନ୍ତି ଭ୍ରମଣ ॥
ତହିଁରୁ କାଟି ଉପୁଜିଲା । ସେ ଯେଣୁ ସାତ ସିନ୍ଧୁ ହେଲା ॥
ଏ ତ କହିଲ ବିପଶ୍ଚିତ । ଅପରେ କେବା ଦ୍ୱୀପ ସାତ ॥
ଏହାର ଯେତେକ ପ୍ରମାଣ । ଅଟରେ ଯେତେକ ଲକ୍ଷଣ ॥
ତତେକ୍ଷି କହ ମୁନିବର । ଶୁଣିମା ଶ୍ରଦ୍ଧା ଯେ ମୋହର ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନନ୍ତ ଅଛା ଯାର ଗୁଣ ॥
ଯେ ସ୍ଥୂଳରୂପ ଭଗବାନ । ଯେ ଜ୍ୟୋତି ରୂପ ସୂକ୍ଷ୍ମବ୍ରହ୍ମ ॥
ପରମ ପରଙ୍କର ପର । ଯେ ବାସୁଦେବ ଚକ୍ରଧର ॥୧୦॥
ତାହାଙ୍କ ଚରଣାରବିନ୍ଦେ । ମୋ ମନ ରହୁ ଅପ୍ରମାଦେ ॥
ଯେଣୁ ତୁମ୍ଭର ଅଗୋଚର । ନାହିଁ ଏ ବ୍ରହ୍ମାଣ୍ଡ ଭିତର ॥
ଏଣୁ ମୋ ମନରେ ସଂଶୟ । ହେ ମୁନି ବିସ୍ତାରିଣ କହ ॥

ଶ୍ରୀ ଶୁକ ଉବାଚ ।

ଶୁଣ ପରୀକ୍ଷ ନୃପବର । ମାୟାରେ ଦୁର୍ଲ୍ଲଭ ଶରୀର ॥
ସଂସାର ତାହାର ଭୂଷଣ । ଅଶେଷ ଅଛି ଯାର ସ୍ଥାନ ॥
ତାହାର ଗୁଣ କର୍ମମାନ । ଏହା କେ କରିବ ବର୍ଣ୍ଣନ ॥
ନର ଅମର ଯେତେ ହୋଇ । ତେତେ କେହେ ବର୍ଣ୍ଣି ନ ପାରଇ ॥
ତଥାପି ଶ୍ରେଷ୍ଠ ଶ୍ରେଷ୍ଠ କରି । କହୁବା ଶୁଣ ଦଣ୍ଡଧାରୀ ॥
ଶୁଣ ଏ ଭୂଗୋଳବର୍ଣ୍ଣନ । ରାଜନ ହୋଇ ସାବଧାନ ॥
ଏ ଜମ୍ବୁଦ୍ୱୀପ ନୃପବର । ବିକଶ କମଳ ଆକାର ॥
ଅତ ଅଭ୍ୟନ୍ତ ଯେନ୍ତେ ସ୍ଥଳୀ । ଅୟୁତେକ ଯୋଜନ ବିସ୍ତାର ॥
ଏମନ୍ତେ ନବ ଯେ ବର୍ଷ । ସହସ୍ର ଯୋଜନ ପ୍ରକାଶ ॥

ମହତ ନବ ପର୍ବତରେ । ଚଭୁର ହୋଇ ସର୍ବଠାରେ ॥
ଏ ନବବରଷ ମଧ୍ୟରେ । ବରଷ ଇଳାବୃତ ଠାରେ ॥
ଯାହାର ନାଭିଦେଶ ତହିଁ । ପର୍ବତରାଜ ଅଛି ରହି ॥
ସୁବର୍ଣ୍ଣମୟ ଯେ ପର୍ବତ । ଅତ୍ୟନ୍ତ ସୁନ୍ଦର ଅଦ୍ଭୁତ ॥
ମସ୍ତକ ଯାହାର ପ୍ରମାଣ । ବାଇଶିସହସ୍ର ଯୋଜନ ॥
ମୂଳ ଯାହାର ପରମାଣ । ଷୋଡ଼ଷ ସହସ୍ର ଯୋଜନ ॥
ସୁବର୍ଣ୍ଣଶୃଙ୍ଗ ତିନ ତାର । ମଧ୍ୟରେ ସ୍ତମ୍ଭର ଆକାର ॥
ପୂର୍ବଭାଗରେ ବେଢ଼ି ଗିରି । ନୀଳ ଧବଳରୂପ ଧରି । ୩୦ ।
ଲବଣ ସିନ୍ଧୁ ନିକଟରେ । ନବସହସ୍ର ସେ ବିସ୍ତାରେ ॥
ନିଷେଧ ହେମ କୂଟ ଆଦି । ଦକ୍ଷିଣେ ଏହାଙ୍କ ପ୍ରସିଦ୍ଧି ॥
ଏହା ଦକ୍ଷିଣେ ଗିରିବର । ହିମାଳୟ ନାମ ତାହାର ॥
ସୁବର୍ଣ୍ଣ ଯଥାକ୍ରମେ ତାର । ଅୟୁତେ ଯୋଜନ ବିସ୍ତାର ॥
ଅପରେ ମାଲ୍ୟ ପୂର୍ବବନ । ବିଶାଳ ଯେ ଗନ୍ଧମାଦନ ॥
ଅୟୁତେ ଯୋଜନ ବିସ୍ତାର । ବିବିଧେ ଯହିଁ ବୃକ୍ଷବର ॥
ଭଦ୍ର ଶୁକଳ ମାଳ ଆଦି । ଏହାଙ୍କ ନାମରେ ପ୍ରସିଦ୍ଧି ॥
ମହେନ୍ଦ୍ର ମେରୁ ଯେ ମନ୍ଦର । ସୁବର୍ଣ୍ଣ ଆଦି ଗିରିବର ॥
ସ୍ୱର୍ଣ୍ଣ ତା ଚତୁର ଭାଗରେ । ବେଷ୍ଟିତ ପ୍ରାକାର ଆକାରେ ॥
ବୃକ୍ଷ ରୋଧନ ଆଦି କରି । ଜମ୍ବୁ କଦମ୍ବ ଯେ ଚତ୍ୱାରି । ୩୫ ।
ପର୍ବତ ଅତି ମନୋହର । ସହସ୍ରେ ଯୋଜନ ବିସ୍ତାର ॥
ଚତ୍ୱାର ସିନ୍ଧୁ ତା ନିକଟେ । ବିବିଧ ଶୁଭ୍ର ନୀର ତଟେ ॥
ମଧୁର ଔଷଧ ଯେ ଫଳ । ଯହିଁ ସକଳ ଋଷି ମେଳ ॥
ଯେ ମହାମତେ କରି ଧ୍ୟାନ । ପ୍ରଭୁଙ୍କୁ କରନ୍ତି ଭଜନ ॥
ଭଦ୍ର ରଥଚକ୍ର ନନ୍ଦନ । ବିବିଧ ଗରୁଡ଼ ବାହନ ॥
ଯହିଁରେ ଅପସରଗଣ । କ୍ରୀଡ଼ା କରନ୍ତି ଅନୁକ୍ଷଣ ॥
କାମିନୀ ସଙ୍ଗତେ ଯେଜନ । ଯହିଁରେ ମେଳ ଦେବଗଣ ॥
ଏକାଶୀ ଯୋଜନ ବିସ୍ତାର । କୋଟି ଅସଂଖ୍ୟ ଯେ ଗିରିବର ॥
ଅତ୍ୟନ୍ତ ତୁଙ୍ଗ ବୃକ୍ଷବର । ସୁରଙ୍ଗବର୍ଣ୍ଣ ଫଳ ତାର ॥
ସୁଗନ୍ଧ ଅମୃତ ସୁସ୍ୱାଦି । ରସ ଗଳଇ ବିଶାଳ ହ୍ରଦ । ୪୦ ।

ସେଠାରୁ ଗୋଦାବରୀ ସାର । କନ୍ଦରୁ ହୋଇଛି ବାହାର ॥
ଲେମ୍ବୁ କମଳା ଜାମ୍ବୁଫଳ । ପାଚି ପଡ଼ଇ ମହୀସ୍ଥଳ ॥
ହସ୍ତି ପ୍ରମାଣେ ଫଳ ସାର । ରସ ଗଳଇ ସେ ଅପାର ॥
ତହିଁ ଟି ଜମ୍ବୁନଦ ଜାତ । ଶୁଣ ସୁମନେ ପରୀକ୍ଷିତ ॥
ତାହାର ଶୃଙ୍ଗୁ ଜଳ ଝରେ । ସୁବର୍ଣ୍ଣ ରହିଅଛି ଘରେ ॥
ମହା କଦମ୍ବ ତରୁବର । ତାହାର ମଧ୍ୟରେ କୋଟର ॥
ପରମଧାମରୂପ ହୋଇ । ତହିଁରୁ ମଧୁ ଯେ ସ୍ରବଇ ॥
ଇଳାବୃତକୁ ବେଢ଼ି କରି । ବିଶାଳ ପୟୋସମା ମେଲି ॥
ବିଷ୍ଣୁର ପଦ୍ମରେ ରହିଲା । ବହୁତ କାଳ ତହିଁ ଗଲା ॥
ସହସ୍ର ଯୁଗର ଅନ୍ତରେ । ପଡ଼ିଲା ସ୍ୱର୍ଗ ମସ୍ତକରେ ॥
ଧ୍ରୁବ ପରମଭାଗବତ । ଜାଣିଲେ ବିଷ୍ଣୁ ପାଦଗତ ॥
ଭକ୍ତିଯୋଗରେ ବଶ ହୋଇ । ଆନନ୍ଦେ ଅଙ୍ଗ ପୁଲକାଇ ॥
ମାର୍ଜନା କରିବା ନିମନ୍ତେ । ଶିରରେ ବହିଲେ ଭୁରତେ ॥
ତେଣୁ ସକଳ ମୁନିଗଣ । ପ୍ରଭାବ ଜାଣି ତତକ୍ଷଣ ॥
ସକଳ ଆତ୍ମା ଭଗବାନ । ତପ ସାଧିଲେ ଯେ ଅନନ୍ୟ ॥
ମୋକ୍ଷ କାରଣେ ସେ ଭଜନ୍ତି । ହରିର ଚରଣ ପୂଜନ୍ତି ॥
ସେ ଜଳ ପାଇ ହୃଷ୍ଟ ହୋଇ । ଜଟାରେ ଥୋଇଲେ ସେ ନେଇ ॥
ତହୁଁ ସେ ବହୁତ ପ୍ରକାରେ । ତପେ ତୋଷିଲେ ପୁରନ୍ଦରେ ॥
ତାହାଙ୍କୁ ଲଘି କରି ଗଲା । ବ୍ରହ୍ମଲୋକରେ ସେ ପଡ଼ିଲା ॥
ତହୁଁ ସେ ବିଦ୍ୟମାନ ହୋଇ । ଚତୁର୍ଦ୍ଧାରୂପକୁ ଯେ ବହି ॥
ଶୁଣ ପରୀକ୍ଷ ନୃପବର । ଏ ନାମ ଚହାର ତାହାର ॥
ସୀତା ଅଳକାନନ୍ଦା ହୁଇ । ସୁଭଦ୍ରା ନାମକୁ ସେ ବହି ॥
ଗିରିଦ୍ରୋଣରେ ସେ ଭ୍ରମଇ । ସିନ୍ଧୁରେ ପ୍ରବେଶ ହୁଅଇ ॥
ବ୍ରହ୍ମା ସଦନୁ ସୀତା ଯାଇ । ଶିଖାର୍ଦ୍ଧନରେ ସେ ଭ୍ରମଇ ॥
ଅଧ ଉର୍ଦ୍ଧ୍ୱରେ ଭ୍ରମିଯାଇ । ଗନ୍ଧମାଦନେ ସେ ପଡ଼ଇ ॥
ସୁର ସିନ୍ଧୁର ପୂର୍ବଦିଗେ । ପ୍ରବେଶି ଅଛି ଅତି ବେଗେ ॥
ମେରୁଶିଖରୁ ଭଦ୍ରା ଯାଇ । ଉତ୍ତରଦିଗେ ସେ ଭ୍ରମଇ ॥
ବିକଟରଙ୍ଗ ଶୃଙ୍ଗଦେଶେ । ଅଳକାନନ୍ଦା ସେ ପ୍ରକାଶେ ॥

ଇଳାବୃତର ଯେ ଉତ୍ତରେ । ପ୍ରଜାଏ ସୁସ୍ଥ ଯା'ର ବଳେ ।୮୦।
ଯାବତ ଜୀବ ସୁଖୀ ହୋଇ । ଅଛନ୍ତି ଯାର ଜଳ ଖାଇ ॥
ଶଙ୍ଖକୂଟ ସୀମାର ଅନ୍ତେ । କପିଳ ବୈଡୂର୍ଯ୍ୟ ପ୍ରସିଦ୍ଧି ॥
ନାନା କାନନ ନଦୀ ନଦ । ଏ ଆଦି ଯେତେକ ପ୍ରସିଦ୍ଧ ॥
ମେରୁକର୍ଣ୍ଣିକା ପ୍ରାପ୍ତ ହୋଇ । ମୂଳଦେଶରେ ପ୍ରକାଶଇ ॥
ଜଠର ମେରୁ ପୃଷ୍ଠଦେଶେ । ଅଠର ଯୋଜନ ପ୍ରକାଶେ ॥
ଦେବକୂଟ ଟଟିରେ ଯାଇ । ମେରୁର ପୂର୍ବଦିଗେ ରହି ॥
ହେନ ସହସ୍ର ଉର୍ଦ୍ଧ୍ୱ ତାର । କି ଅବା ଦେବା ପଦ୍ମାନ୍ତର ॥
ପାଏ ପବନ ପାରି ହୁଇ । ତାହାର ପଶ୍ଚିମ ସେ ହୋଇ ॥
କୈଳାସ କର୍ଣ୍ଣବୀର ଦୁଇ । ଦକ୍ଷିଣପାଶେ ବିରାଜଇ ॥
ଉତ୍ତରେ ତ୍ରିଶିର ମକର । ଅଛନ୍ତି ହେନ ଗିରିବର ।୯୦।
ଅଷ୍ଟଗିରିର ମଧ୍ୟ ଦେଶେ । ସୁବର୍ଣ୍ଣଗିରି ଯେ ପ୍ରକାଶେ ॥
ସୁବର୍ଣ୍ଣଗିର ଅଗ୍ରଦେଶେ । ବ୍ରହ୍ମା'ର ପୁର ଯେ ପ୍ରକାଶେ ॥
ଅୟୁତ ଯୋଜନ ସେ ହୋଇ । ମାଳାଦି କୁସୁମ ବାସଇ ॥
ସୁବର୍ଣ୍ଣ ବୃକ୍ଷମାନଙ୍କର । କି ଅବା ଦେବା ପଦ୍ମାନ୍ତର ॥
ହେମ କଳଶ ଉଚ୍ଚପୁର । ଗୃହଦିଗରେ ସେ ତାହାର ॥
ସକଳ ଦେବଲୋକଙ୍କର । ସୁନ୍ଦର ସୁବର୍ଣ୍ଣ ମନ୍ଦିର ॥
ଏଥି କର୍ମରେ ଯେତ୍ତାମନେ । ନିର୍ମିତ ପୁର ଯତ୍ରଆଚିତେ ॥
ଅଷ୍ଟପାଳଙ୍କ ଅଷ୍ଟପୁର । ସୁସଜ୍ଜ ଅତି ମନୋହର ॥
ପଞ୍ଚମସ୍କନ୍ଧେ ଏହୁ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ।୧୦୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭୁବନ
କୋଶବର୍ଣ୍ଣନେ ନାମ ଷୋଡ଼ଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ ।

ତତଃ ସପ୍ତଦଶେ ଗଙ୍ଗା । ଗମନଂ ତୁ ଚତୁର୍ଦ୍ଦିଶଂ ।
ଇଳାବୃତେ ଚ ରୁଦ୍ରେଣ ସଙ୍କର୍ଷଣ ନିଷେବଣଂ ॥

## ଶ୍ରୀ ଶୁକ ଉବାଚ ।

ଶୁଣ ରାଜନ ପରୀକ୍ଷିତ । ସେ ଯଜ୍ଞଲିଙ୍ଗ ଯେ ଅଚ୍ୟୁତ ॥
ମାୟାବାମନ ଅବତାର । ତାହାଙ୍କ ରୂପ ଯେ ଅପାର ॥
ଯାହା କନିଷ୍ଠ ଅଙ୍ଗୁଳିରେ । ବ୍ରହ୍ମାଣ୍ଡ ଭାଜିଲା ନଖରେ ॥
ତହୁଁ ଅଦ୍ଭୁତ ଜଳଧାର । କି ଅବ: ଦେବା ପଠାନ୍ତର ॥
ଦୁରିତ ନାଶନ ସୁରଧୁନୀ । ପ୍ରାଣୀ ତରନ୍ତି ସ୍ନାନପାନେ ॥
ତହୁଁ ଗଳଇ ଅତି ଖରେ । ପଡ଼ିଲା ଭୃଙ୍ଗ ପର୍ବତରେ ॥
ଅଳକାନନ୍ଦା ନାମ ହୋଇ । ବହୁ ଗିରିରେ ସେ ଭ୍ରମଇ ॥
ସୁବର୍ଣ୍ଣଗିରି ହିମାଳୟ । ତାହାଙ୍କୁ କରି ସେ ଆଶ୍ରୟ ॥
ଅତି ପ୍ରଖର ବ୍ୟଗ୍ର ହୋଇ । ପଡ଼ଇ ଭୂମିଭାଗ ଦେଶେ ॥
ତହିଁ ଲବଣ ସିନ୍ଧୁ ଜଳେ । ପ୍ରବେଶ ହୁଅଇ ନିଶ୍ଚଳେ ।
ଅନ୍ୟ ଯେ ନଦନଦୀ ଯେତେ । ଶତସହସ୍ର ସେହିମତେ ॥
ନାନା ଗିରିରୁ ଜନ୍ମ ହୋଇ । ସିନ୍ଧୁରେ ପ୍ରବେଶନ୍ତି ଯାଇ ॥
ଭାରତବରଷେ ରାଜନ । ଏ କର୍ମକ୍ଷେତ୍ର କରି ଜାଣ ॥
ଅପରେ ଅଷ୍ଟ ଯେ ବରଷ । ସ୍ୱର୍ଗଲୋକରେ ସେହୁ ବାସ ॥
ତହିଁ ପୁରୁଷଙ୍କ ଆୟୁଷ । ଦଶ ସହସ୍ର ଯେ ବରଷ ॥
ଦେବତା ତୁଲ୍ୟ ପରାକ୍ରମ । ନିତ୍ୟେ ହୁଅନ୍ତି ହର୍ଷମନ ॥
ତାହାଙ୍କ ରୂପର କାରଣ । ପଛେ କହିବା ହେ ରାଜନ ॥
ପରମ ଭାଗବତ ଜନ । ମହାପୁରୁଷ ଯେ ରାଜନ ॥
ଦୈତ୍ୟ ଦାନବ କୁଳମଣି । ସୁଶୀଳ ସାଧୁ ସତ୍ୟବାଣୀ ॥
ପ୍ରହ୍ଲାଦ ନାମ ଦୈତ୍ୟ ବର । ପ୍ରଭୁଙ୍କ ପ୍ରିୟ ସେ ଅଟଇ ।
ଇନ୍ଦ୍ରିୟଗଣଙ୍କୁ ନିବାରି । ଚଞ୍ଚଳ ମନ ସ୍ଥିର କରି ॥
ସେ ସ୍ଥଳ ଲୋକଙ୍କ ସହିତେ । ପ୍ରଭୁଙ୍କୁ ଚିନ୍ତେ ଅବିରତେ ॥
ଏହି ସ୍ତବରେ ସ୍ତୁତି କରି । ସେବକ ପ୍ରଭୁ ନରହରି ॥
ନମସ୍ତେ ପ୍ରଭୁ ଦଇତ୍ୟାରି । ତୋହର ତେଜ ହିରଣ୍ୟପୁର ॥
ନିଜର ତେଜ ଯେ ପ୍ରକାଶ । ରବି କିରଣ କରେ ନାଶ ॥
କରାଳ ଦୃଷ୍ଟ ଯେ ବଦନ । ଅନଳ ପ୍ରାୟେ ସେ ଲୋଚନ ॥
ଯାହାର ନାମେ ଦୁଷ୍ଟ ଡରେ । ନମଇ ସେ ବେଳ ପଦ୍ମରେ ॥

ହେ ନାଥ ତୋହର ପ୍ରସାଦେ । ପ୍ରାଣୀ ବର୍ତ୍ତନ୍ତି ଅପ୍ରମାଦେ ॥
ତୁମ୍ଭର ଅଭୟ ପଦ୍ମରେ । ମୋ ମନ ରହୁ ଯେ ନିଷ୍ଟଳେ ॥
ଏ ଯେ ତନୟ ସୁତ ମୋର । ମନ ନ ରହୁ ହେ ଈଶ୍ୱର ।
ତୁମ୍ଭର ଭକ୍ତଜନ ସଙ୍ଗେ । ସୁଖେ ବଞ୍ଚିବ ନାନାରଙ୍ଗେ ॥
ଆମ୍ଭାଙ୍କୁ ପ୍ରିୟ ଯେ ଅପରେ । ନାହିଁ ଏ ଅଖିଳ ସଂସାରେ ॥
ସକଳ ଆତ୍ମାର ଠାକୁର । ଯେଣୁ ତୁ ପ୍ରିୟ ପ୍ରାଣୀଙ୍କର ॥
ତୁମ୍ଭର ନାମ ସ୍ମରଣ । ଅଶେଷ ପରମ କାରଣ ॥
ଏମନ୍ତ ଯାହାର ପ୍ରଭାବ । ତାହାକୁ କେବା ନ ସେବବ ॥
ତୁମ୍ଭ ପାଦେ ଭକ୍ତି ଯାର । ପୂଜ୍ୟ ସେ ଦେବ ଦାନବର ॥
ସକଳ ଗୁଣ ତାଙ୍କଠାରେ । ଆଶ୍ରୟ କରନ୍ତି ତାହାରେ ॥
ତୋହର ଅନ୍ୟ ପ୍ରାଣୀମାନ । ସଂସାର ବନ୍ଧନ କାରଣ ॥
ତାହାର ନାମ ଗୁଣ କର୍ମ । ମନ ବର୍ତ୍ତନ ନୋହେ ଭ୍ରମ ॥
ତୁ ତନ ମାୟାଗୁଣେ ବନ୍ଦୀ । ସଂସାର କରୁଅଛୁ ବନ୍ଦୀ ।
ଯାହାର ସଦ୍ଗୁଣ ଅପାର । ନାହିଁ ଏ ବ୍ରହ୍ମାଣ୍ଡ ଭିତର ॥
ଉତ୍ପତ୍ତି ପ୍ରଳୟ ପାଳନ । ଏ ସର୍ବ ଯାହାର ଭୂଷଣ ॥
ଯାହାର ଆଦିଅନ୍ତ ନାହିଁ । ଅନନ୍ତ ନାମ ସେ ବୋଲାଇ ॥
ଯା ରଥ ସାକ୍ଷ ଯାର ପ୍ରାଣ । ନମସ୍ତେ ପୁରୁଷ ପୁରାଣ ॥
ଯାହାର ତହୁଁ ଜନ୍ମ ହୋଇ । ଅପଞ୍ଚ ସାର ଯାର ଦେଖି ॥
ବ୍ରହ୍ମାଦି ଆଦି ଯେ ସକଳେ । ସେ ଚନ୍ଦ୍ର ଯାର ପାଦତଳେ ॥
ରଜୁବନ୍ଧନ ପ୍ରାପ୍ତ ହୋଇ । ଯନ୍ତ୍ରିତ ହୋଇଅଛି ରହି ॥
ଅନୁଗ୍ରହରୁଷ୍ଟ ଯାହାର । ଭୂଷଣ ନ ରହେ ସଂସାର ॥
ତ୍ରିଗୁଣ ସଙ୍ଗତେ ବନ୍ଧନ । ଯାର ମାୟାରେ ପ୍ରାଣୀମାନ ॥
ତ୍ରିଗୁଣବଶେ ମୋହ ହୋଇ । ଜନ୍ମ ମରଣ ନ ଜାଣଇ ।
ଏ ମାୟା ହେତୁ ଯେ ବିସ୍ତାର । ଯେ ଭୁଜଗତେଣ ବିହର ॥
ତାହାକୁ ମୋର ନମସ୍କାର । ସେ ପ୍ରଭୁ ଜଗତଠାକୁର ॥
ସଜ୍ଜନ ଶୁଣ ଏହି ବାଣୀ । ପଞ୍ଚମସ୍କନ୍ଧେ ପରମାଣି ॥
କହଇ ଦ୍ୱିଜ ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ॥
ମୁହିଁ ପାମର ଦୁରାଚାର । ହେ ନାଥ ମୋତେ କୃପାକର ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ସଂସାର ବ୍ୟବହାର
ବର୍ଣ୍ଣନେ ନାମ ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ ।

ଅଷ୍ଟାଦଶେ ତତଃ ମେରୋଃ ପୂର୍ବାଦିକ୍ରମତଶ୍ଚିଷୁ ।
ଷଣ୍ଣୃଷ୍ଵୋତ୍ତରବର୍ଷେଷୁ ସେବ୍ୟ ସେବକ ବର୍ଣ୍ଣନଂ ॥

ଶ୍ରୀ ଶୁକ ଉବାଚ ।

ଭଦ୍ରାଶ୍ୱବର୍ଷର ବିଧାନ । ରାଜନ ଶୁଣ ସାବଧାନ ॥
ଭଦ୍ରଶ୍ରବା ଯେ ନାମ ତାର । ସାକ୍ଷାତ ଧର୍ମର କୁମର ॥
ତାହାର କୁଳେ ହୋଇ ଜାତ । ଯେତେକ ପୁରୁଷ ବିଦିତ ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନନ୍ତ ପ୍ରଭୁ ନାରାୟଣ ॥
ତାହାଙ୍କ ସନ୍ତୋଷ କାରଣେ । ପରମ ସମାଧି ବିଧାନେ ॥
ପ୍ରଭୁ ଯେ ଧର୍ମରୂପ ବହି । ଗଛନ୍ତି ପ୍ରାଣୀ ହିତ ପାଇଁ ॥
ତାହାଙ୍କ ସେବା ଅହରହେ । କରନ୍ତି ଯେହ୍ନେ ଅନୁମତେ ॥
ପରମ ପ୍ରିୟଭାବ ଧର । ହେତୁମନ୍ତରେ ସ୍ତୁତି କର ॥

ଭଦ୍ରଶ୍ରବସ ଉଚୁଃ ।

ନମଇଁ ଧର୍ମ ଅବତାର । ଆତ୍ମା ଶୋଧନ ପ୍ରାଣୀଙ୍କର ॥
ଏତେ ଆଶ୍ଚର୍ଯ୍ୟ ଯେ ମହତ । ପ୍ରଭୁର ଯେତେ ବିଚେଷ୍ଟିତ ॥୧୦॥
ଶରୀର ମାତ୍ର ଯେ ଅଛଇ । ତଥାପି ପ୍ରାଣୀ ନ ଜାଣଇ ॥
ବିଶ୍ୱସଂସାରେ ମୂର୍ଖଜନେ । ସତ୍ୟ କରନ୍ତି ଅନୁକ୍ଷଣେ ॥
ପଣ୍ଡିତଜନେ ଏହା ଜାଣି । ମିଥ୍ୟା ଯେ ମନେ ପରମାଣି ॥
ତଥାପି ତାହାର ମାୟାରେ । ପଣ୍ଡିତେ ଭ୍ରମନ୍ତି ସଂସାରେ ॥
ସେ ଅଜ ବ୍ରହ୍ମାଣ୍ଡଠାକୁର । ତାହାଙ୍କୁ କର ନମସ୍କାର ॥
ସକଳ ଅକୃତି ସେ ହୋଇ । ତାହାର ଅବୟବ ନାସ୍ତି ॥
ଏ କଥା ବିଚିତ୍ର ତୋହର । କାର୍ଯ୍ୟକାରଣ ତୁ ଠାକୁର ॥
ନାନା ଶରୀରବନ୍ତ ହୋଇ । ନାନା ଭୋଗକୁ ଭୁଞ୍ଜି ତୁହି ॥
ତୋତେ ମୋହର ନମସ୍କାର । ତୁ ନାଥ ସକଳ ଈଶ୍ୱର ॥

ତୁ ନାଥ କଳାବନ୍ତ ହୋଇ । ତୋହର ଅବସ୍ତବ ଦେଖି ॥
ଏ କଥା ଜଗତ ତୋହର । ତୋତେ ମୋହର ନମସ୍କାର ॥
ଏମନ୍ତେ ନାନା ସ୍ତୁତିମତେ । ସେବନ୍ତି ତାଙ୍କ ପାଦଗତେ ॥
ନୃସିଂହ ନାମେ ଯେ ଠାକୁର । ଅଛନ୍ତି ଭଦ୍ର ସରେବର ॥
ତାହାଙ୍କ ରୂପର କାରଣ । ପଛେ କହିବା ହେ ରାଜନ ॥
ପରମ ଭାଗବତ ଜନ । ମହାପୁରୁଷ ହେ ରାଜନ ॥
ଦୈତ୍ୟ ଦାନବ କୁଳମଣି । ସୁଶୀଳ ସାଧୁ ସତ୍ୟବାଣୀ ॥
ପ୍ରହ୍ଲାଦ ନାମ ସେ ବହଇ । ପ୍ରଭୁର ପ୍ରିୟ ସେ ଅଟଇ ॥
ଇନ୍ଦ୍ରିୟଗଣଙ୍କୁ ନିବାରି । ଚଞ୍ଚଳମନ ସ୍ଥିର କରି ॥
ସେ ସ୍ଥଳ ଲୋକଙ୍କ ସହିତେ । ପ୍ରଭୁଙ୍କୁ ଚିନ୍ତନ୍ତି ଅବିରତେ ॥
ଏହି ସ୍ତୁତିରେ ସ୍ତୁତି କରି । ସେବନ୍ତି ପ୍ରଭୁ ନରହରି ॥
ନଖଙ୍କ ତେଜେ ଯେ ପ୍ରକାଶ । ରିପୁ କରଣ କରେ ନାଶ ॥
କରାଳ ଦଂଷ୍ଟ୍ର ଯେ ବଦନ । ଚକ୍ରର କମଳଲୋଚନ ॥
ଯାହାର ନାମେ ଦୁଷ୍ଟ ଡରେ । ନମଇ ପ୍ରଭୁଙ୍କ ପୟରେ ॥
ହେ ନାଥ ତୋହର ପ୍ରସାଦେ । ପ୍ରାଣୀ ତରନ୍ତି ଅପ୍ରମାଦେ ॥
ଏ ତୋର ଅଭୟ ଚରଣେ । ମନ ମୋ ରହୁ ଅନୁକ୍ଷଣେ ॥
ଦାରା ତନୟ ଗୃହେ ମୋର । ମନ ନ ରହେ ହେ ଈଶ୍ୱର ॥
ତୁମ୍ଭର ପ୍ରିୟଜନ ସଙ୍ଗେ । ସୁଖେ ବଞ୍ଚିବ ନାନା ରଙ୍ଗେ ॥
ଅତିମାତ୍ର ପ୍ରିୟ ଯେ ଅପର । ନାହିଁ ଏ ଅଖିଳ ସଂସାର ॥
ତୋହର ତହିଁ ଭକ୍ତି ଯାର । ସେ ପୂଜ୍ୟ ଦେବମାନଙ୍କର ॥
ସକଳ ଗୁଣ ତାହା ଠାରେ । ଆଶ୍ରୟ କରନ୍ତି ବେଗରେ ॥
ତୋର ମାୟାରେ ପ୍ରାଣୀଗଣ । ସଂସାରର ବନ୍ଧନ କାରଣ ॥
ଏହା ଜାଣିଣ ଯେବା ନର । ଭଜଇ ନୃସିଂହ ପୟର ॥
ଅଶେଷ ଭୟରୁ ତରଇ । କର୍ମବନ୍ଧନ କ୍ଷୟ ଯାଇ ॥
ଶୁଣ ରାଜନ ମନତୋଷେ । କେତୁମାଲ ନାମେ ବରଷେ ॥
ଅଖିଳ ବ୍ରହ୍ମାଣ୍ଡ କାରଣ । କାମଦେବ ରୂପ ଧରଣ ॥
ଲକ୍ଷ୍ମୀର ସନ୍ତୋଷ କାରଣେ । ବିହାର କରନ୍ତି ଆପଣେ ॥
ସେ ସ୍ଥଳଲୋକ ପୁଣ୍ୟଫଳେ । ନାନା ବିହାର ସୁଖଭୋଳେ ॥

ଅତି ଲଳିତ ନୋଷଭଟରେ । ଉଲାସ ନାନା ମନୋହରେ ॥
ରୁଚିର ହାସ୍ୟ ନଖମାନ । କଟାକ୍ଷେ ଯେ ଅବଲୋକନ ॥
ଉକର ବଦନାରବିନ୍ଦ । ନିନ୍ଦଇ ପୌର୍ଣ୍ଣମୀର ଚନ୍ଦ୍ର ।୫୦।
ଲଳିତ ଲତା ମୃଗସ୍ଥଳେ । ଲକ୍ଷ୍ମୀ ସହିତେ କୃତୂହଳେ ॥
କ୍ରୀଡ଼ା କରନ୍ତି ସୁଖମନେ । ବନ୍ଧୁ ସ୍ତ୍ରୀ ଭୃତ୍ୟ ଅନୁମାନେ ॥
ପ୍ରଜାପତି ଦୁହିତା ସଙ୍ଗେ । ତହିଁ ଯେ ଲକ୍ଷ୍ମୀଦେବୀ ଅଙ୍ଗେ ॥
ପରମ ସମାଧି ଯୋଗରେ । ସ୍ତୁତି କରନ୍ତି କୃଷ୍ଣଠାରେ ॥
ନମଇଁ ପ୍ରଭୁ ହୃଷୀକେଶ । ସକଳ ପ୍ରାଣୀ ଯହିଁ ବାସ ॥
ଷୋଡ଼ଶ କଳାବନ୍ତ ତୁମ୍ଭ । ବେଦବେ ତୋହର ନିଜ ଦେହ ॥
ସକଳ ଅନ୍ନ ତୁ ଈଶ୍ୱର । ଅନ୍ନମୟ ତୋ ଶରୀର ॥
ତୁ ଯେ ପରମ ଭୟଙ୍କର । ତୁ ନାଥ ସକଳ ଈଶ୍ୱର ॥
ଅତି ସୁଶୀଳ ଶାନ୍ତ ତୁମ୍ଭ । ତୋ ତହୁଁ ଅନ୍ୟ କେହି ନାହିଁ ॥
ହେ ନାଥ ତୋ ପାଦ କମଳ । ସେବି ଲଭନ୍ତି ନାନା ଫଳ ।୬୦।
ତୋହର ଜନ ଯେ ହୁଅଇ । ତାଙ୍କୁ ସଙ୍କଟେ ରଖୁ ତୁମ୍ଭ ॥
ତୋ ପାଦସେବିରୁ ହୁଇ । ନରତେ ଯେମନ୍ତେ ସେବଇ ॥
ଏମନ୍ତ ଅଜ୍ଞା ମୋତେ କର । ତୁ ନାଥ କରୁଣା ସାଗର ॥
ତୋତେ ଯେ ଭାବେ ଆରାଧଇ । ନାହାର ମନୋହର ସେହି ॥
ତୁମ୍ଭ ପ୍ରସନ୍ନ ବିନୁ ତାର । ଫଳ ନ ହୁଇ ହେ ଠାକୁର ॥
ତୋ ଶୁଣି ସକଳ ଈଶ୍ୱର । ଦ୍ୱିତୀୟେ ନାହିଁ ପଟାନ୍ତର ॥
ହେ ନାଥ ତୁମ୍ଭେ ନାନାଦେହୀ । ସାଧୁଙ୍କ ନିସ୍ତାରଣ ପାଇଁ ॥
ତୁମ୍ଭର ଚେଷ୍ଟା ଏ ସଂସାରେ । ବ୍ରହ୍ମାଦି କେବା ଜାଣିପାରେ ॥
ବିଷ୍ଣୁଙ୍କ ବରଷ ଚରିତ । ଶୁଣ ସଜନ ପରୀକ୍ଷିତ ॥
ପ୍ରଭୁର ମତ୍ସ୍ୟ ଅବତାର । ଦେବ ମାନବେ ଅଗୋଚର ।୭୦
ଅତି ସୁନ୍ଦର ରୂପରାଶି । ମନୁର ବଂଶ ତହିଁ ବସି ॥
ସେ ରୂପ ଆରାଧନ ପାଇ । ଅନେକ ସ୍ତୁତି ଯେ କରଇ ॥
ନମଇ ପରମ ଈଶ୍ୱର । ଯାହାର ନାମ ଅଗୋଚର ॥
ବିସ୍ତାରେ ମତ୍ସ୍ୟ ତୋ ଶରୀର । ତୁ ପ୍ରଭୁ ସକଳ ପ୍ରାଣୀର ॥
ତୁ ଥାଇ ଅନ୍ତର ବାହାରେ । ତୋ ମାୟା କେବା ଜାଣିପାରେ

ଏ ତୋର ମୀନ ମାୟାଦେହ । ଦେବ ମାନବେ କେହ ନାହିଁ ॥
ସଂସାରସାଗରେ ତୋ ଜନ୍ମ । ମାୟା ତରଙ୍ଗ ଯହିଁ ଭ୍ରମ ॥
ପରମ ମହାବଳୀ ଦେହ । ସଂସାରେ ନାନାଦେହ ବହ ॥
ଜଗତ ପ୍ରାଣୀଙ୍କ ଠାକୁର । ତୋ ପାଦେ ମୋର ନମସ୍କାର ॥
ହିରଣ୍ୟବର୍ଷର ଏ ବାଣୀ । ରାଜନ ଶୁଣ ପରମାଣି ।୮୦।
ଅଖିଳ ବ୍ରହ୍ମାଣ୍ଡ ଠାକୁର । ଧରଣୀକୁମାର ଶଙ୍କର ॥
ଅର୍ଯ୍ୟମା ଭୂତଳ ପିତୃଗଣେ । ଯେତେତ ଅଛନ୍ତି ସେହି ସ୍ଥାନେ ॥
ତାହାଙ୍କ ଯେଣ ପିତୃପତି । ପ୍ରଭୁଙ୍କୁ ଅନନ୍ଦେ ସେବନ୍ତି ॥
ଏମନ୍ତେ ନାନା ସ୍ତୁତିମତେ । ସେବନ୍ତି ପ୍ରଭୁ ପାଦଗତେ ॥
ନମସ୍ତେ ପ୍ରଭୁ ସତ୍ୟଗୁଣ । ଲେଖି ନ ପାରେ ଯାର ସ୍ଥାନ ॥
ଯାର ଅଶେଷ ନାମ ଗୁଣ । ନମଇ ପ୍ରଭୁ ଭଗବାନ ॥
ନିଜମାୟାରେ ରୂପ ଧରି । ଅଶେଷ ଦେହ ସେ ଅବୋଧ ॥
ନାନା ଜନ୍ମରେ ସେ ପ୍ରସିଦ୍ଧି । ସଂସାରେ ଯେବା ଯାର ବୁଦ୍ଧି ॥
ଚର ଅଚର ପିତୃ ଭୂତ । ଇନ୍ଦ୍ରିୟ ଆଦି ଯେ ସମୂତ ॥
ଆକାଶ ଆଦି ମହୀତଳ । ଗିରି କାନନ ନାନା ଜଳ ।୯୦।
ଦ୍ୱୀପ ବରଷା ଯେ ସାଗର । ସେ ସର୍ବ ନାମଟି ତୋହର ॥
ବ୍ରାହ୍ମଣ ଯେତେକ ଅଛନ୍ତି । କହଏ ଯାହା ଜଣାରନ୍ତି ॥
ସେ ସର୍ବ ରୂପ ତୁ ଠାକୁର । ନମଇ ତୋହର ପୟର ॥
ଉତ୍ତର ବରଷେ ରାଜନ । ବରାହରୂପୀ ଭଗବାନ ॥
କୁରୁମ ଖ୍ୟାତ ତ୍ରିହ ବହି । ଅଗମ ସ୍ତୁତି ଯେ କରଇ ॥
ନମଇ ଅନାଦି ଅଚିନ୍ତ୍ୟ । ସକଳ ଯଜ୍ଞ ଯାହା ଦେହ ॥
ସକଳ ଗୁଣ ରୂପ ଧରି । ନମସ୍ତେ ପ୍ରଭୁ ନରହରି ॥
ନିବୃତ୍ତିତୃଷ୍ଣା ଜ୍ଞାନଜନ । ମାନ୍ଧାଷ୍ଟ ଯା ନାମେ ଖଣ୍ଡନ ॥
ସୃଷ୍ଟି ଉଦୟ ଯାର କାୟେ । ଯେ ଗୁଣେ ନିଗୁଣରେ ରହେ ॥
ଏ ତୋର ମାୟାରେ ଭ୍ରମନ୍ତି । ସେ ମାୟା କେହି ନ ଜାଣନ୍ତି ॥
ସର୍ବ କର୍ମରେ ତୁ ଈଶ୍ୱର । ହେ ନାଥ ତୋତେ ନମସ୍କାର ॥
ସଂଗ୍ରାମେ ନାଶି ଦୁଷ୍ଟଗଣ । ମାୟା ଶୂକର ରୂପ ଜନ୍ମ ॥
ଉଗ୍ରଦନ୍ତରେ ତୋର ପଣ । ହେ ନାଥ ପ୍ରଭୁ ନାରାୟଣ ॥

ତୋହର ପାଦପଦ୍ମ ଦୁଇ । ଆନନ୍ଦେ ନମଇଁ ଯେ ମୁହିଁ ।
କହଇ ବିପ୍ର ଜଗନ୍ନାଥ । ହରିଚରିତ ଭଗବତ ।
ବସୁଧ ଧରଣୀର ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ।
ସ୍ୱଜନଜନଙ୍କ ପଦ୍ମବର । ମୋ ମନ ରହୁ ନିରନ୍ତରେ ।୧୦୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭୁବନ
କୋଶ ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।



## ଊନବିଂଶ ଅଧ୍ୟାୟ ।

ଊନବିଂଶେ କିଂପୁରୁଷେ ଭାରତେ ଶ୍ରେୟଉଚ୍ୟତେ ।
ସେବ୍ୟସେବକଭାବସ୍ତତ୍ରାରତସ୍ୟ ଶ୍ରେୟସ୍ୟମେବ ଚ ॥

ଶ୍ରୀ ଶୁକ ଉବାଚ ।

ଏବେ କିଂପୁରୁଷର ବାଣୀ । ରାଜନ ଶୁଣ ପରମାଣି ॥
ସୀତାରମଣ ରଘୁରାଣ । ତାହାଙ୍କ କହନ୍ତି ଲକ୍ଷଣ ॥
ପରମବ୍ରହ୍ମ ଯେ ଈଶ୍ୱର । ଯାହାର ହନୁମନ୍ତ ବୀର ॥
ପରମ ଭାଗବତ ସେହ । ନିଷ୍ଠେ ଭକ୍ତିଯୋଗ ଲଯ୍ଯୀ ॥
ପ୍ରଭୁ ପଦାରବିନ୍ଦ ତଳେ । ସେବଇ ମନର ନିଷ୍ଠେ ॥
ସେ ରାମ କଥା ପୁଣ୍ୟୋତ୍ତମ । ଗନ୍ଧର୍ବ କରନ୍ତି ଗାୟନ ॥
ଏ ଅଷ୍ଟସେନାର ସହିତେ । ହନୁଟି ଶ୍ରେଷ୍ଠ ଭକ୍ତିମତେ ॥
ଏମନ୍ତେ କରନ୍ତି ଗାୟନ । ସ୍ତୁତି କରଇ ତୋଷମନ ।
ଉତ୍ତମ ଶ୍ଳୋକ ତୁ ଠାକୁର । ନମଇଁ ତୋହର ପଯ୍ୟର ॥
ସର୍ବ ଲକ୍ଷଣ ତୋର ତହିଁ । ସକଳ ଶ୍ରେଷ୍ଠ ତୁ ଗୋସାଇଁ ।୧୦
ସର୍ବ ବନ୍ଦନ ତୁ ଠାକୁର । ତୋତେ ମୋହର ନମସ୍କାର ॥
ନର ନାରାୟଣ ଶରୀର । ପରମହଂସ ତୁ ଠାକୁର ॥
ନମଇଁ ବ୍ରହ୍ମାଣ୍ଡ ଠାକୁର । ସକଳ ଦେବଙ୍କର ବର ।
ମହାପୁରୁଷ ମହାରାଜ । ନମସ୍ତେ ବ୍ରହ୍ମାଣ୍ଡର ବୀଜ ॥
ସ୍ୱତେଜେ କର ତନ୍ତ୍ରଗୁଣ । ବିନାଶ କରୁ ନାରାୟଣ ॥
ପ୍ରଶାନ୍ତ ସାଧୁ ତୁ ଠାକୁର । ତୋତେ ମୋହର ନମସ୍କାର ॥

ତୋହର ନାମ ରୂପ ଯେତେ । କେହ୍ନ ନ ଜାଣନ୍ତି ଜଗତେ ॥
ମାୟାପାଶରେ ତୋର ଜନ୍ମ । ସଂସାର ଫନ୍ଦାର କାରଣ ॥
ଅନ୍ୟ ମୋ ନାହିଁ ଭଗବାନ । ସୀତା ହରଣେ ଷୋଭମନ ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ତୁମ୍ଭେ ବାକ୍ୟ କହ ନ ପାର ॥
ତେବେହେଁ ପକ୍ଷୀ ନରନ୍ତର । ଜୀବ ମାନଙ୍କ ଅବତାରେ ।୨୯।
ଏକ ତୋହର ସମ୍ଭବଇ । ଭୋଳାନାଥ ତୋର ମାୟା ଏହ ॥
ଜନ୍ମ ମରଣ ଯାର ନାହିଁ । ଅଖିଳପ୍ରଭୁ ଭବଗ୍ରାହୀ ॥
ସୁର ଅସୁର ଅନ୍ଧ କର । ବ୍ରହ୍ମାଣ୍ଡେ ଯେତେ ଦେହଧାରୀ ॥
ଏ ହଙ୍କ ଅସ୍ଥାରେ ଈଶ୍ୱର । କି ଅବା ଅକର୍ତ୍ତବ୍ୟ ତାର ॥
ଉତ୍ତରକୋଶଳକୁ ଯାଇଁ । ଯେ ପ୍ରଭୁ ନରଦେହ ବହି ॥
ସେ ରାମ ପାଦତଳେ ମୂର୍ଦ୍ଧ । ହରଷେ ପ୍ରଣାମ କରଇ ॥
ଶୁଣ ରାଜନ ମନତୋଷେ । ଏବେ ଯେ ଭରତ ବରଷେ ॥
ନରନାରାୟଣ ଯେ ହରି । କଳ୍ପେ ପର୍ଯ୍ୟନ୍ତ ତପ କରି ॥
ସାଧୁଙ୍କ ପରିତ୍ରାଣ ପାଇଁ । ତପସ୍ୟା ରୂପବନ୍ତ ହୋଇ ।୩୦।
ଗମନ୍ତି ଆତ୍ମାସୁଖମତେ । ନାରଦ ତାଙ୍କୁ ତୋଷଚିତ୍ତେ ॥
ଭକତ ସାଧୁଜନ ମେଳେ । ସ୍ତୁତି କରନ୍ତି ଯେ ନିଷ୍ଠଳେ ॥
ନମସ୍ତେ ପ୍ରଭୁ ଅଦ୍ଧମୂଳ । ତୋ ରୂପ ଚିନ୍ତ ଏ ନିର୍ମଳ ॥
ଋଷଭ ବର ତୁ ଠାକୁର । ତୋତେ ମୋହର ନମସ୍କାର ॥
ସର୍ବ ବନ୍ଦନ ତୁ ଠାକୁର । ତୋତେ ମୋ ଥର ନମସ୍କାର ॥
ସକଳ ଆତ୍ମାଭୂତ ତୁହି । ତୋ ପାଦପଦ୍ମେ ମନଦେଇ ॥
ସକଳ କର୍ତ୍ତା ତୁ ଈଶ୍ୱର । ଦର୍ଶନ ନାହିଁ ଯେ ତୋହର ॥
ତୁହି ଯେ ମାନବ ଶରୀର । ଭୋଗ ତୁ କରୁ ମେଦନୀର ॥
ସକଳ ଦେଖୁ ତୁ ଠାକୁର । ଗୁଣେ ଦୃଶ୍ୟ ନାହିଁ ତୋର ॥
ଏ ତୋର ତହିଁ ଯାର ମନ । ତାହାର ସଂସାର ଖଣ୍ଡନ ।୪୦।
ଦାରା ତନୟ ଧନ ଘର । ଏଣେ ଅର୍ପିତ ମନ ଯାର ॥
ସେ ତୋତେ ପାଇବେଟି କାହିଁ । ଶ୍ରମ କେବଳ ତାଙ୍କ ଦେହି ॥
ଏ ମୋର ମୂଢ଼ ମତି ତୁହି । ବିନାଶ କର ଭବଗ୍ରାହୀ ॥
ତୋହର ତହିଁ ମୋର ମନ । ନିଶ୍ଚଳ ରହୁ ଭଗବାନ ॥

ଏ ଯେ ଭାରତବରଷରେ । ପର୍ବତ ଅଛନ୍ତି ଅପାରେ ॥
ମଙ୍ଗଳ ପ୍ରସ୍ଥ ଯେ ପ୍ରଭବ । ମଳୟ ତ୍ରିକୂଟ ଋଷଭ ॥
ମନ୍ଦର ଦେବଗିରି କାଳ । ଶୋଣାମୁଖ ଯେ ଇନ୍ଦ୍ରକୀଳ ॥
ଶ୍ରୀଶୈଳ ବ୍ୟଙ୍କଟ ମୈନାକ । କୋଲ୍ଲ ଚିତ୍ରକୂଟ ଋଷ୍ୟମୂକ ॥
କୂର୍ମ ସ୍ୱରୂପ ସହ୍ୟ ଆଦ । କୋଳାଗ୍ର ଦେବାଗ୍ର ପ୍ରସିଦ୍ଧି ॥
ମହେନ୍ଦ୍ର ବିନ୍ଧ୍ୟଗିରିଧର । ମୂଳମାନୁଷ ବାରିଧାର ।୫୦।
କକୁଭ ପାରିପାତ୍ର ଦ୍ରୋଣ । ଚିତ୍ରକୂଟ ଯେ ଗୋବର୍ଦ୍ଧନ ॥
କାମ୍ୟ ସୁମେରୁ ଯେ ରୈବତ । କାମଗିରି ଏ ଆଦି ଖ୍ୟାତ ॥
ଏମନ୍ତେ ନଦ ନଦୀ ଆଦ । ଶତ ସହସ୍ର ଯେ ପ୍ରସିଦ୍ଧି ॥
ଚନ୍ଦ୍ରବସା ଯେ ତୁଙ୍ଗଭଦ୍ରା । ତାମ୍ରପର୍ଣ୍ଣୀ ଅବଟୋଦା ॥
କାବେରୀ ବର୍ତ୍ତି ପୟସ୍ୱିନୀ । କୃତମାଳା ତ୍ରିବେଣୀ ବେଣୀ ॥
ଶର୍କରା ଶର୍ଯ୍ୟାବତୀ ତହିଁ । ଶୁଣ ରାଜନ ଏବେ କହି ॥
କୃଷ୍ଣବେଣୀ ଯେ ଗୋଦାବରୀ । ଭୀମରଥୀ ସିନ୍ଧୁ କାବେରୀ ॥
ପୟୋଷ୍ଣୀ ତାପୀ ରେବାନଦୀ । ସୁରସା ନର୍ମଦା ଏ ଆଦି ॥
ବେଦସ୍ମୃତି ଯେ ମହାନଦୀ । ତ୍ରିସାମା ଋଷିକୁଲ୍ୟା ନଦୀ ॥
କୌଶିକୀ ସରଯୂ ଗୋମତୀ । ଗଙ୍ଗା ଯମୁନା ସରସ୍ୱତୀ ।୬୦।
ଦୃଷଦ୍ୱତୀ ଯେ ବୈଷବତୀ । ଷଷ୍ଠବତୀ ଯେ ସପ୍ତବତୀ ॥
ସୁଷୋମା ବସ୍ତା ଚର୍ମଣ୍ୱତୀ । ଚନ୍ଦ୍ରଭାଗା ଯେ ଭୀମରଥୀ ॥
ଶତଦ୍ରୁ ବିତସ୍ତା ଅସିକ୍ନୀ । ଅନ୍ଧ ଶୋଣ ଏ ନବ ବେଣୀ ॥
ମୁନିଏ ଋଷି ଆଦି ନାମ । କର୍ମ କରନ୍ତି ଏତେ ସ୍ଥାନ ॥
ଏହି ପୁରୁଷ ହେ ରାଜନ । କର୍ମରେ ପ୍ରାଣୀ ହୋଏ ଜନ୍ମ ॥
ସକଳହିଁ ତ କୃଷ୍ଣବର୍ଣ୍ଣି । କର୍ମରୁ କର ପ୍ରାଣୀ ଜନ୍ମ ॥
ସ୍ୱର୍ଗ ନରକ ଭୂମିଭାଗ । କର୍ମ ଅଧିକ କରି ଭୋଗ ॥
ସେ ପ୍ରାଣୀ ସର୍ବଭୂତେ ବର । କୃଷ୍ଣରେ ଭକ୍ତି ଯାହାର ॥
ସର୍ବଭୂତରେ ଆତ୍ମା ସେହି । ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ ॥
ସେ ବାସୁଦେବ ଚକ୍ରଧର । ତାହାର ତହିଁ ମତି ଯାର ।୭୦।
ଭକ୍ତିଯୋଗ ଯେ ଦୃଢ଼ତାରେ । ସେ ପ୍ରାଣୀ କର୍ମବନ୍ଧୁ ତରେ ॥
ମହାପୁରୁଷ ପ୍ରସଙ୍ଗରେ । ହେଳାରେ ଛିଡ଼ାରେ ବା କରେ ॥

ଦେବେ ତାହାର ଗୁଣକର୍ମ । ଅନନ୍ଦେ କରନ୍ତି ଗାୟନ ॥
ଧନ୍ୟ ତାହାର ଜନ୍ମ ସାର । ମୁକୁନ୍ଦ ପାଦେ ଭକ୍ତି ଯାର ॥
ଭାରତ ମାନବ ଜନ୍ମରେ । ସେ ପ୍ରାଣୀ ଶ୍ରେଷ୍ଠ ସର୍ବଠାରେ ॥
ଦୁଷ୍କର୍ମ ଯଜ୍ଞ ତପଦାନ । ଏଥିରେ କି ଅବା କାରଣ ॥
ଯଜନ ଆଦି ଯେତେ କର୍ମ । ତାହାର ସବୁ ନଷ୍ଟାରଣ ॥
ପ୍ରଭୁର ପାଦପଦ୍ମ ସାର । ସ୍ମରଣ ନାହିଁଟି ଯାହାର ॥
କଳ୍ପ ଆୟୁଷ ସୁଖମାନ । ଏହା ସକଳ ବ୍ୟର୍ଥ ମନ ॥
କ୍ଷଣ ଆୟୁଷ ଭାରତରେ । ମନ ଯାହାର କୃଷ୍ଣଠାରେ ।
ସେ ପ୍ରାଣୀ ସର୍ବଶ୍ରେଷ୍ଠ ହୋଇ । ତାହାର ସମ କେହି ନାହିଁ ॥
ପ୍ରାଣ ପ୍ରୟାଣ ସମୟରେ । ଯେବେ ମାନବ କୃଷ୍ଣ ସ୍ମରେ ॥
କ୍ଷଣେକେ କର୍ମକୁ ଛେଦଇ । ବୈକୁଣ୍ଠ ପଦକୁ ଲଭଇ ॥
ବୈକୁଣ୍ଠ କଥା ସୁଧାରସ । ସ୍ଥଳରେ ନୋହେ ସେ ପ୍ରକାଶ ॥
କୃଷ୍ଣ ଆଶ୍ରୟ ପ୍ରାଣୀମାନେ । ଯହିଁରେ ନାହିଁ ସାଧୁଜନେ ॥
ଯଜ୍ଞରେ ମହୋତ୍ସବ ଆଦି । ଏ ସ୍ଥଳେ ଯହିଁ ଏ ପ୍ରସିଦ୍ଧି ॥
ଇନ୍ଦ୍ରର ପୁର ଯେବେ ହୋଇ । ତହିଁରେ ବାସ ନ ଯୋଗାଇ ॥
ମାନବ ଜନ୍ମ ହୋଇ ନର । ନାମରେ ଜ୍ଞାନ ଧ୍ୱଂସ ତାର ॥
ତଥାପି ପ୍ରଭୁର ସେ ନାମ । ତେଜଇ ଛନ ଛନ ମନ ॥
ନାନା ଯୋନରେ ଜନ୍ମହୋଇ । କର୍ମବନ୍ଧନରେ ଜଡ଼ଇ ।
ଶ୍ରଦ୍ଧାରେ ଆଜ୍ୟ ଯେତେ ନର । ଯଜ୍ଞେ ପୂଜନ୍ତି ସେ ଅଗ୍ନିର ॥
ନାନା ଦେବତା ରୂପ ହୋଇ । ତହିଁ ତା ବିନୁ କେହି ନାହିଁ ॥
ତାହାଙ୍କୁ ସେବନ୍ତି ଯେ ପ୍ରାଣୀ । ତାହାକୁ ମନୁଷ୍ୟରେ ଗଣି ॥
ଇଚ୍ଛା ନ କଲେ ଫଳ ଦେଇ । ଏଣୁ ତା ନାମ ଭବଗ୍ରାହୀ ॥
ପଦପଲ୍ଲବ ଭଜନରେ । ମନ ଯାହାର ଦୃଢ଼ତରେ ॥
ଭକ୍ତଜନ ପ୍ରାଣୀଙ୍କଠାରେ । କରୁଣା କରନ୍ତି ବେଗରେ ॥
ଜମ୍ବୁଦ୍ୱୀପର ନୃପବର । ଅଷ୍ଟ ଉପଦ୍ୱୀପ ବିସ୍ତାର ॥
ଅଷ୍ଟ ପୌତ୍ରନ୍ତି ବ୍ୟୁନ୍ଧସ୍ୱ । ଶରଣ ପୁତ୍ରଙ୍କରେ କର ॥
ଖଣ୍ଡ ହୋଇଲା ଗୃହଦ୍ୱେଗ । ଏଣୁ ସେ ଅଷ୍ଟଧାରଭାଗେ ॥
ଶୁଣ ହେ ପରୀକ୍ଷ ରାଜନ । ଅଷ୍ଟ ଉପଦ୍ୱୀପର ନାମ ।

ରମଣକ ଯେ ଅର୍ଦ୍ଧେନ । ସ୍ୱର୍ଣ୍ଣପ୍ରସ୍ଥ ନନ୍ଦ ହ ଣ ॥
ପାଞ୍ଚଜନ୍ୟ ଚନ୍ଦ୍ର ଶୁକଳ । ଲଙ୍କା ଅବର ଯେ ସିଂହଳ ॥
ବରଷ ବହୁଗର ମତେ । ଜମ୍ବୁଦ୍ୱୀପରେ ଯଥୋଚତେ ॥
ତୁମ୍ଭର ପ୍ରଶ୍ନ ଅନୁସାରେ । ହେ ନୃପ କହିଲି ତୁମ୍ଭରେ ॥
କହଇ ଦ୍ୱିଜ ଜଗନ୍ନାଥ । ଭାଗବତର ଯେ ରହିତ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଜମ୍ବୁଦ୍ୱୀପବର୍ଣ୍ଣନେ
ନାମ ଊନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ ।

ବିଂଶେ ପ୍ଲକ୍ଷାଦଷଡ୍ଦ୍ୱୀପ ସ୍ଥିତିମାହ ସହାର୍ଣ୍ଣବୈଃ ।
ଲୋକାଲୋକ ସ୍ଥିତିଶ୍ଚାନ୍ତ ବହିର୍ଭାଗେ ଦ ମାନବ ॥

ଶ୍ରୀ ଶୁକ ଉବାଚ ।

ଏଥୁଅନ୍ତରେ ହେ ରାଜନ । ପ୍ଲକ୍ଷଦ୍ୱୀପ ଯେ ବଦ୍ୟମାନ ॥
ଲବଣ ସମୁଦ୍ର ପ୍ରମାଣ । କହିବ ସାବଧାନେ ଶୁଣ ॥
ଜମ୍ବୁଦ୍ୱୀପରେ ଯେ ପ୍ରମାଣ । ପ୍ଲକ୍ଷ ଯେ ତହିଁକି ଦ୍ୱିଗୁଣ ॥
ଜମ୍ବୁଦ୍ୱୀପରେ ଦ୍ୱୀପ ସାତ । ପ୍ଲକ୍ଷରେ ସେ ଦ୍ୱୀପ ବିଦିତ ॥
ସପତ ଦ୍ୱୀପ ତା ପାଳଇ । ଅପରେ ଯେତେ ଛନ୍ତି ରହି ॥
ପ୍ରିୟବ୍ରତର ସେ ନନ୍ଦନ । ଇଧ୍ମଜିତ ତାହାର ନାମ ॥
ସେ ଦ୍ୱୀପ ବିଭାଗକୁ କରି । ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥
ସପତପୁତ୍ରେ ଯେଣ୍ଟାମତେ । ସପ୍ତବରଷ ଯଥୋଚିତେ ॥
କଲେକ ପର୍ଯ୍ୟନ୍ତେ ଯୋଗବଳେ । ଅଛି ସେ ଅବନୀମଣ୍ଡଳେ ॥
ବରଷ ନାମ ଶୁଣ ତୁହି । ଶିବ ବୟସ ଏହି ଦୁଇ ॥
ସୁଭଦ୍ର କ୍ଷେମ ଏ ଅମୃତ । ଶାନ୍ତ ଅଭୟ ସେ ବିଦିତ ।୧୦।
ଏଥେ ଯେତେକ ଗିରିବର । ଅଛନ୍ତି ଶୁଣ ନରେଶ୍ୱର ॥
ମଣିକୂଟ ଯେ ଇନ୍ଦ୍ରସେନ । ବଜ୍ରକୂଟ ସେ ଜ୍ୟୋତିଷ୍ମାନ ॥
ଶତଶୃଙ୍ଗ ଯେ ମେଘମାଳ । ହିରଣ୍ୟ ଷ୍ଠୀବ ସେତୁ କୀଳ ॥
ସାବିତ୍ରୀ ଅଙ୍ଗୀରସ ବେଳ । ଅରୁଣା ନୃମଣା ତଟିନୀ ॥

ଋତମ୍ଭର ଯେ ସପ୍ତଭ୍ରାତା । ସତ୍ୟମ୍ଭର ଯେ ସୁବିଖ୍ୟାତା ।
ଏ ମହାନଦୀମାନେ ତହିଁ । ଏଣୁ ସେ ସ୍ଥଳୀ ବସ୍ତଇ ॥
ତହିଁର ଜଳ ସ୍ନାନ ପାନେ । ମାନବ ପଶୁ ଜୀବମାନେ ।
ସକଳ ପାପ ଦୂର କରି । ସୁଖେ ଅଛନ୍ତି ସେ ବିହରି ॥
ଦେବଙ୍କ ଆୟୁଷ ପ୍ରମାଣେ । ବଞ୍ଚନ୍ତି ତହିଁ ପ୍ରାଣୀମାନେ ।୨୦।
ଯଜ୍ଞ ଯୋଗରେ ପୂଜା କରେ । ସୂର୍ଯ୍ୟଙ୍କୁ ଭଜନ୍ତି ସେ ନରେ ॥
ସ୍ତୁତି କରନ୍ତି ଏ ବଚନେ । ଶୁଣ ରାଜନ ସାବଧାନେ ॥
ବିଷ୍ଣୁ ସ୍ୱରୂପକୁ ତୁ ଧରି । ଅଖିଳ ପ୍ରକାଶ ଯେ କରି ॥
ତୁ ସତ୍ୟବ୍ରହ୍ମ ଯେ ପୁରୁଷ । ସକଳ ଭୂତେ ତୋର ବାସ ॥
ତୁ ଯେ ଅଶେଷ ବନ୍ଧୁ ନାମ । ସେ ପାଦେ ଅମ୍ଭର ପ୍ରଣାମ ।
ସାତଦ୍ୱୀପ ଯେ ପ୍ଲକ୍ଷ ଆଦି । ଏଥିରେ ଯେତେକ ପ୍ରସିଦ୍ଧି ॥
ସେ ପ୍ରାଣୀମାନଙ୍କ ଆୟୁଷ । ଇନ୍ଦ୍ରିୟବଳେ ଯେ ବିଶେଷ ॥
ସ୍ୱଇଚ୍ଛାମତେ ସେ ହୁଅଇ । ଜାତପଣ୍ଡିରୁ ଯେଣୁ ତହିଁ ॥
ପ୍ଲକ୍ଷଦ୍ୱୀପର ଚୌପାଶେ । ଇକ୍ଷୁରସସିନ୍ଧୁ ପ୍ରକାଶେ ॥
ଏହାକୁ ଦ୍ୱିଗୁଣ ପ୍ରମାଣ । ଶାଲ୍ମଳ ଦ୍ୱୀପ ହେ ରାଜନ ॥
ସୁରାସମୁଦ୍ର ବେଢି ତାରେ । ଅଛି ଯେ ବଳୟ ଆକାରେ ।୩୦।
ଏ ଦ୍ୱୀପେ ତାର ଅଧିକାର । ପ୍ରିୟବ୍ରତର ଯେ କୁମର ॥
ଯଜ୍ଞବାହୁ ତାହାର ନାମ । ସେ ସାଧୁ ବିଷ୍ଣୁପରାୟଣ ॥
ଏ ଦ୍ୱୀପ ସପ୍ତଭାଗ କରି । ପୁଅଙ୍କୁ ଦେଲା ଦଣ୍ଡଧାରୀ ।
ବେଣ୍ଟରେ ତାର ସପ୍ତପୁତ୍ରେ । ନେଲେ ସେ ଯେଝାରେ ସମସ୍ତେ
ସପ୍ତ କୁମାରଙ୍କ ନାମ । ରାଜନ ! ଶୁଣ ସାବଧାନ ॥
ପାରିଭଦ୍ର ଯେ ଅଭିଜ୍ଞାତ । ସୌମନସ୍ୟ ନାମେ ଖ୍ୟାତ ॥
ରମଣକ ଯେ ସୁରୋଚନ । ଦେବବର୍ଷ ଯେ ଆପ୍ୟାୟନ ॥
ଏ ସପ୍ତଙ୍କର ନଦୀ ଗିରି । ଯେତେ ଅଛନ୍ତି ଦଣ୍ଡଧାରୀ ॥
ଶତଶୃଙ୍ଗ ଯେ ଗିରିବର । ସୁରସ କୁନ୍ଦ ଯେ ଅପର ॥
ସହସ୍ରଶ୍ରୁତି ପୁଷ୍ପବର୍ଷ । ବାମଦେବ ନାମ ବିଶେଷ ।୪୦।
ସିନୀବାଲୀ ଯେ ସରସ୍ୱତୀ । କୁହୁ ରଜନୀ ଅନୁମତି ।
ନନ୍ଦା ରାକା ଯେ ଏହି ହୁଇ । ନଦୀଙ୍କ ସପ୍ତନାମ ଏହି ॥

ଏ ଯେ ବରଷ ପ୍ରାଣୀମାନେ । ତପ ଆରାଧନ ଧ୍ୟାନେ ॥
ସେ ରାଜା ଭଗବାନ ସମ । ତାହାଙ୍କୁ କରନ୍ତି ବନ୍ଦନ ॥
ହେ ନାଥ ତୋର ସୁଧାରସ । ପିତୃଦେବତାଙ୍କ ସନ୍ତୋଷ ॥
ସପ୍ତସମୁଦ୍ର ମଧ୍ୟଦେଶେ । କୁଶ ନାମେ ଦ୍ୱୀପ ପ୍ରକାଶେ ॥
ଘର୍ମେ ଯେ ସିନ୍ଧୁ ଦ୍ୱୀପମାନ । ପୂର୍ବଙ୍କୁ ଅପରେ ଦ୍ୱିଗୁଣ ।
ପ୍ରିୟବ୍ରତର ସେ ନନ୍ଦନ । ହିରଣ୍ୟରେତା ଯାର ନାମ ॥
କୁଶଦ୍ୱୀପରେ ସେ ରାଜନ । ତାହାର ସପତ ନନ୍ଦନ ॥
ଏ ଦ୍ୱୀପମାନ ଦଣ୍ଡଧାରୀ । ପୁତ୍ରଙ୍କୁ ଦେଲେ ଭାଗ କରି ॥
ସପତବରଷକୁ ଦେଲା । ଯେଝାର ମତେ ବଣ୍ଟିଲା ॥
ନଦୀ ପର୍ବତ ସୀମା କରି । ସେଭାଗରେ ଦେଲା ଦଣ୍ଡଧାରୀ ॥
ଗିରିଙ୍କ ନାମ ମସ୍ତପାକ । ବଭ୍ରୁ ଚତୁଃଶୃଙ୍ଗ କପିଳ ॥
ଚିତ୍ରକୂଟ ଯେ ଦେବାନୀଣ । ଊର୍ଦ୍ଧ୍ୱରୋମା ପରେ ଦ୍ରବଣ ॥
ରସକୁଲ୍ୟା ଯେ ମିତ୍ରବିନ୍ଦା । ମଧୁକୁଲ୍ୟା ଯେ ସୁତବିନ୍ଦା ॥
ଦେବଗର୍ଭ ଯେ ଘୃତଚ୍ୟୁତ । ମନ୍ତ୍ରମାଳା ଯେ ଗିରି ହୃତ ॥
ଏ ସପ୍ତନଦୀ ଜଳପାଟେ । ସ୍ନେହେ ବସନ୍ତି ତହିଁ ଜନେ ॥
ଜାତବେଦରୂପକୁ ଧରି । ଅଛନ୍ତି ଏକମନ କରି ॥
ପରମବ୍ରହ୍ମର ମୁକତି । ତୋ ରୂପ ଯୋଗିଜନେ ଚିନ୍ତି ॥
ସଂସାରେ ଯେତେ ସାଧୁଜନ । ଯଜ୍ଞେ କରନ୍ତି ତୋ ବନ୍ଦନ ।୬୭।
ଏମନ୍ତେ ସ୍ତୁତି ନାନାମତେ । ଅଗ୍ନି ପୂଜନ୍ତି ଯଥୋଚିତେ ॥
କ୍ଷୀରସିନ୍ଧୁ ମଧ୍ୟଭାଗରେ । ଦ୍ୱୀପ ଯେ କ୍ରୌଞ୍ଚ ନାମ ଧରେ ॥
କ୍ରୌଞ୍ଚ ନାମରେ ଗିରିବର । ତା ନାମେ ନାମ ଏ ଦ୍ୱୀପର ॥
ପ୍ରିୟବ୍ରତର ପୁତ୍ର ହୋଇ । ଘୃତପୃଷ୍ଠ ନାମ ବହଇ ॥
ସେ ଦ୍ୱୀପେ ରାଜନ୍ତୁ ତାହାର । ସପତ ତାହାର କୁମର ॥
ସପ୍ତବରଷ କଟିଦେଇ । ନିଷ୍ଠେ ପ୍ରଭୁଙ୍କୁ ଭଜଇ ॥
ମେଧପୃଷ୍ଠ ଯେ ମଧୁରୁହ । ସୁଧାମା ବନସ୍ପତିଦ୍ରୁମ ॥
ଭ୍ରାଜିଷ୍ଠ ଲୋହିତାର୍ଣ୍ଣ ଆଦି । ବରଷ ନାମ ଏ ପ୍ରସିଦ୍ଧି ॥
ଶୁକ୍ଳ ବର୍ଦ୍ଧମାନ ଭୋଜନ । ଉପବର୍ହଣର ନନ୍ଦନ ॥
ସର୍ବତୋଭଦ୍ର ନନ୍ଦନାଦି । ଗିରି ତ ନାମେ ଯେ ପ୍ରସିଦ୍ଧି ।୬୮।

ଅଭୟା ସୁପ୍ରା ଆର୍ଯ୍ୟକାନ୍ତା । ରୂପବତୀ ଯେ ତୀର୍ଥବତୀ ॥
ପଞ୍ଚବତୀ ଶୁକ୍ଳା ଅତି । ଏ ସପ୍ତ ନଦୀ ନାମ ଖ୍ୟାତି ॥
ଯାହାର ଜଳ ପାନ କରି । ଦେବଦେବଙ୍କୁ ପ୍ରାଣୀ ଧରି ॥
ଜଳ ଏ ଯେହ୍ନେ ରୂପରାଶି । ତାହାଙ୍କୁ ଭଜନ୍ତି ତପସ୍ୱୀ ॥
ଭସ୍ତୁ ସୋମମୟ ତୁ ଈଶ୍ୱର । ଭୁବନ ପବନ ତୁ କର ॥
ଏ ତୋର ପାଦରେ ବନ୍ଦନ । ଆମ୍ଭେ ଯେ କରୁ କୃଷ୍ଣମନ ॥
ଏ ଅନନ୍ତରେ ପଣ୍ଡିତ । ଯେ ଶାକଦ୍ୱୀପରେ ବସନ୍ତ ॥
ଦଧି ସମୁଦ୍ର ବେଢ଼ି ତାରେ । ଅଛି ଯେ ଏ ସିନ୍ଧୁ ମଧ୍ୟରେ ॥
ତହିଁ ଯେ ଶାକ ତରୁବର । ସୁଗନ୍ଧ ବାସନ୍ତ ପ୍ରସର ॥
ପ୍ରିୟବ୍ରତର ଯେ କୁମର । ମେଧାତିଥି ନାମ ତାହାର ॥
ରାଜତ୍ୱପଣ ହୋଇ ତହିଁ । ସେ ସାତଦ୍ୱୀପ ଯେ ପାଳଇ ॥
ଦ୍ୱୀପକୁ ସପ୍ତଭାଗ କରି । ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥
ତାହାଙ୍କ ପୁତ୍ରଙ୍କର ନାମ । ରାଜନ ଶୁଣ ସାବଧାନ ॥
ମନୋଜବ ଯେ ଧୂମ୍ରାନୀକ । ପୁରୋଜବ ବଂଶୀ ପୁରଚିକ ॥
ବହୁରୂପ ଯେ ବିଶ୍ୱଧର । ବେଦମାନ ନାମେ ଅପାର ॥
ସପ୍ତବରଷ ଯେହ୍ନାମତେ । ଦଇବେ ନୃପ ଯଥୋଚିତେ ॥
ପ୍ରଭୁର ପାଦେ ଚିତ୍ତ ଦେଲା । ତପବନରେ ନୃପ ରହିଲା ॥
ଏହାଙ୍କ ପର୍ବତର ନାମ । ରାଜନ ଶୁଣ ସାବଧାନ ॥
ମହାନ ଶତଂ ତା କେଶର । ସହସ୍ର ବୃନ୍ଦ ଦେବବଳ ॥
ଗିରିବଳଭ ଯେ ଈଶାନ । ଉରୁଶୃଙ୍ଗ ଯେ ତାର ନାମ ॥
ଶତେ ବରଷ ସେ ପୁରୁଷ । ଋତୁବ୍ରତ ଅଦ୍ଧ ବିଶେଷ ॥
ଯେବା ଅରୂପ ଭଗବାନ । ତାହାଙ୍କୁ କରନ୍ତି ସେବନ ॥
ପରମ ଯୋଗ ସମାଧିରେ । ସ୍ତୁତି କରନ୍ତି ଯେ ଶ୍ରୁତିରେ ॥
ହେ ଦେବ ପରମଆକାର । ତୋତେ ଅମ୍ଭର ନମସ୍କାର ॥
ପ୍ରାଣୀର ଅନ୍ତର ବାହାର । ତୁ ନାଥ ଥାଉ ନିରନ୍ତର ॥
ଦଧିସିନ୍ଧୁ ପରେ ରାଜନ । ପୁଷ୍କରଦ୍ୱୀପ ଯେ ଦ୍ୱିଗୁଣ ॥
ସ୍ୱାଦଜଳସିନ୍ଧୁ ତାହାରେ । ବେଢ଼ିଛି ବଳୟ ଆକାରେ ॥
କମଳାସନ ପ୍ରଭୁଙ୍କର । ଯହିଁ ଆସନ ପଦ୍ମକର ॥

ଜୀବନ କନକ ଶୋଭିତ । ଅଯୁତ ଶତପୁର ରତ ॥
ଏହାର ନାମ ଦେବାକର । ଲୋକେ ପ୍ରସିଦ୍ଧ ଯେ ପୁଷ୍କର ।୧୦୦।
ଏ ଦ୍ୱୀପ ମଧ୍ୟେ ନୃପବର । ପର୍ବତ ମନ ସେ ଉତ୍ତର ॥
ବିସ୍ତାର ଅଯୁତେ ଯୋଜନ । ଚାରିଦିଗରେ ହୋ ରାଜନ ॥
ମେରୁ ଭ୍ରମନ୍ତେ ମେରୁପାର । ଦିନ୍ତି ଅହୋରାତ୍ର ଚକ୍ରଧର ॥
ଧାତୁକ ମରଣ ଏ ଦୁଇ । ପ୍ରିୟବ୍ରତର ପୁତ୍ର ସେହି ॥
ଏ ଦ୍ୱୀପେ ତାଙ୍କ ଅଧିକାର । ଶୁଣ ପରୀକ୍ଷ ନୃପବର ॥
ସେ ସ୍ଥଳଲୋକଙ୍କ ସହିତେ । ଏହି କରନ୍ତି ଯଥୋଚିତେ ॥
ଯେ ବ୍ରହ୍ମରୂପ ଭଗବାନ । ତାହାଙ୍କୁ କରନ୍ତି ଭଜନ ॥
ଯେ ପ୍ରଭୁ କର୍ମରୂପ ହୋଇ । ଅଖିଳ ସୃଷ୍ଟିକି ଭିଆଇ ॥
ସେ ବ୍ରହ୍ମରୂପ ଯେ ଠାକୁର । ନମଇ ତାହାଙ୍କ ପଯ୍ୟନ୍ତ ॥
ଏହାର ପରେ ପରୀକ୍ଷିତ । ଲୋକାଲୋକ ନାମେ ପର୍ବତ ॥
ଏହାର ମଧ୍ୟେ ଯେଉଁ ସ୍ଥଳ । କାଳୀନ ଭୂମି ମଣ୍ଡଳ ॥
ବେନି ପର୍ବତ ମଧ୍ୟଦେଶ । କାଳୀନ ଭୂମି ଯେ ପ୍ରଦେଶ ॥
ଏଣୁ ଯେ ଏହାର ଅନ୍ତରେ । ଗତାଗତ ନାହିଁ ଯେ ପରେ ॥
ଏଣୁ ଏ ଲୋକାଲୋକ ନାମ । ଏ ସର୍ବ ଈଶ୍ୱର ଭିଆଣ ॥
ଏ ଯେ ଭୂଗୋଳ ହୋ ରାଜନ । ପଞ୍ଚାଶତକୋଟି ବିସ୍ତୀର୍ଣ୍ଣ ॥
ପୃଥ୍ୱୀ ଚତୁର୍ଥଭାଗ ନାମ । ଏ ଲୋକାଲୋକ ଗିରିସମ ॥
ଅଖିଳଜଗତର ଗୁରୁ । ଯେ ଅମ୍ବାଯୋନି ମହାମେରୁ ॥
ଅଖିଳ ଲୋକଙ୍କର ମତେ । ଏହାର ଊର୍ଦ୍ଧ୍ୱେ ଯଥୋଚିତେ ॥
ଧ୍ରୁବଗତ ଯେ ଯେଉଁଠାରେ । ଅନେକ କର୍କଶ ବେଶରେ ॥
ଅପରାଜିତା ଯେବା ମାନ । ପୁଷ୍କର ଚୂଡ଼ ଯେ ବାମନ ।୧୨୦।
ଏହାଙ୍କ ବଳ ନିରନ୍ତରେ । ଅଖିଳ ବ୍ରହ୍ମାଣ୍ଡଠାକୁରେ ॥
ସେ ଯେ ଅନାଦି ପାଶୋଦରେ । ନାନା ଆୟୁଧ ଧରି କରେ ॥
ହସ୍ତୀର ରକ୍ଷଣର ପାଇ । ରଖିଲେ ପ୍ରଭୁ ଭାବଗ୍ରାହୀ ॥
ନାନା ଅଳଙ୍କାରକୁ ଦେଇ । ବିଚିତ୍ର ବେଶକୁ ସେ ବହି ॥
କରଷ ଦ୍ୱୀପ ନଦୀ ଗିରି । ଭୂମିରେ କହିଲୁ ବିସ୍ତାରି ॥
ଲୋକାଲୋକ ଗିରି ଅନ୍ତରେ । ଈଶ୍ୱର ସୃଷ୍ଟି ଅଗୋଚରେ ॥

ଅଷ୍ଟଶୃଙ୍ଗମଧ୍ୟେ ରବିଗତ । ଧ୍ରୁବ ସ୍ୱର୍ଗ ମଧ୍ୟରେ ସ୍ଥିତ ॥
ସୂର୍ଯ୍ୟ ଅନ୍ତମଧ୍ୟରେ ମଧ୍ୟ । ପଞ୍ଚାଶକୋଟି ଯେ ପରିଛି ॥
ଅସ୍ତା ଚକ୍ଷୁସ୍ୱରୂପ ନସହୁ । ସେ ସୂର୍ଯ୍ୟ ଅଖିଳଗୋସାଇଁ ॥
ବିଶ୍ୱସ୍ୱରୂପ ଶେଷମନ୍ତ । କହଇ ବିପ୍ର ଜଗନ୍ନାଥ ।୧୩୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ସପ୍ତଦ୍ୱୀପ ସପ୍ତ-
ସିନ୍ଧୁ କଥନେ ନାମ ବିଂଶୋଽଧ୍ୟାୟଃ ।



## ଏକବିଂଶ ଅଧ୍ୟାୟ ।

ଏବମଧ୍ୟାୟବିଂଶତ୍ୟା ଭୂମର୍ଯ୍ୟାଦା ନିରୂପିତା ।
ଅତଃ ପରଂ ଦ୍ୟୁମର୍ଯ୍ୟାଦା ଗ୍ରାନନଂ ନିରୁଚ୍ୟତେ ॥

ଶ୍ରୀ ଶୁକ ଉବାଚ ।

ଭୁବନକୋଷର ପ୍ରମାଣ । କହିବି ଯେତେକ ଲକ୍ଷଣ ॥
ଯାହାର ନିକଟରେ ରହି । ସୂର୍ଯ୍ୟ ଯେ ତ୍ରୈଲୋକ୍ୟ ତାପଇ
ଅତ୍ୟନ୍ତ ବେଗଭର ହୋଇ । ଉତ୍ତର ଦକ୍ଷିଣେ ଭ୍ରମଇ ॥
ମାଲକ୍ଷ ଯକ୍ଷ ବେଗ ନାମ । ବିଷ୍ଣୁ ଭୁବନ ଭ୍ରେ ସୃଜନ ॥
ଢବାକରର ବୃଷି ଯେତେ । ଘାଢ ହ୍ରସ୍ୱ ଯେ ପରଯନ୍ତେ ॥
ବିଶୁଦ୍ଧ ସମାନକ ପାଇ । ପୁଣି ଘାର୍ଘ ହ୍ରସ୍ୱେ ବଢ଼ଇ ॥
ତୁଲ୍ୟ ବିଶୁଦ୍ଧ ପୁଣ ପାଇ । ଅହୋରାତ୍ର ସେ ନାମ ବହି ॥
ନବକୋଟି ଏକାବନ ଲକ୍ଷ । ଯୋଜନ ପ୍ରମାଣ ପ୍ରତ୍ୟକ୍ଷ ॥
ମାନସଗିରି ତହିଁ ରହି । ଇନ୍ଦ୍ରର ପୁର ବିରାଜଇ ॥
ପୂର୍ବଭାଗରେ ସେ ସୁମେରୁ । ଦେବଧ୍ୟାନ ନାମ ଯହିଁରୁ ।୧୦।
ଯମରପୁର ତା ଦକ୍ଷିଣେ । ବିରାଜେ ସଞ୍ଜୀବନୀ ନାମେ ॥
ପଶ୍ଚିମପୁର ବରୁଣର । ନିମ୍ନୋଚନ୍ତି ନାମ ତାହାର ॥
ଉତ୍ତରଭାଗେ ସୋମପୁରୀ । ନାମ ତାହାର ବିଭାବରୀ ॥
ତହିଁ ଉପାୟ ମଧ୍ୟ ଅନ୍ତ । ଏ ଚାରିକାଳ ଯେ ବିଦିତ ॥
ପ୍ରାଣୀ ପ୍ରବୃତ୍ତି ନିବୃତ୍ତିରେ । ସୁମେରୁ ଚଉଦିଗରେ ॥
ଅହର୍ନିଶି ଭ୍ରମରେ ତହିଁ । ପ୍ରାଣୀଙ୍କି ସୁଖପ୍ରଦ ହୋଇ ॥

ଚାମାବର୍ତ୍ତିକ ପ୍ରାନ୍ତେ ତହିଁ । ନିତ୍ୟେ ଆଦିତ୍ୟ ଯେ ଭ୍ରମଇ ॥
ଉଦୟକାଳେ ଯେ ଲକ୍ଷଣ । ଅସ୍ତକାଳରେ ସେହି ପୁଣ ॥
ଦ୍ୱିକୋଟି ଦ୍ୱାଦଶ ଯୋଜନ । ଲକ୍ଷରେ ହର ପରିମାଣ ॥
ପଞ୍ଚଦଶ ଘଟିକାଟେକେ । ଇନ୍ଦ୍ରର ପୁରୀ ଅବଲୋକେ ।
ଯମର ପୁରରେ ପ୍ରବେଶ । ସେଠାରେ କରନ୍ତି ପ୍ରକାଶ ॥
ଏଥୁଁ ବରୁଣ ଆଦି ଯେତେ । ଆଦିତ୍ୟ ଭ୍ରମନ୍ତି ଯେ ନିତ୍ୟେ ॥
ଚନ୍ଦ୍ରାଦି ଯେତେ ଗ୍ରହମାନ । ଏହି କ୍ରମରେ ସେ ଭ୍ରମଣ ॥
ଜ୍ୟୋତିଷଚକ୍ର ଯେ ପ୍ରକାରେ । ଭ୍ରମଇ ଚତୁର୍ଦ୍ୱୀପରେ ॥
ଆଦିତ୍ୟ ରଥର ଗମନ । ମୁହୂର୍ତ୍ତ କ୍ଷଣ ହୋ ବଚନ ॥
ଚଜୁ ତିନଲକ୍ଷ ଯୋଜନ । ଅଷ୍ଟଶତ ଅଧିକ ପୁଣ ॥
ଇନ୍ଦ୍ରାଦି ଦେବପୁର ମେଳେ । ଏ କ୍ରମେ ଭ୍ରମନ୍ତି ନିଷ୍ଟେଳ ॥
ଦ୍ୱାଦଶର ସଙ୍ଗମ ତାର । ସେ ରଥେ ଏକ ଚକ୍ରଧର ॥
ସୁମେରୁ ମସ୍ତକ ଉପରେ । କ୍ରମେ ସେ ସମାନ ପ୍ରକରେ ॥
ତ୍ରୈଲୋକ୍ୟ ଭୁବପ୍ରାନ୍ତେ ହୋଇ । ରବିର ରଥ ସେ ଭ୍ରମଇ ।
ରଥର ଚର୍ଦ୍ଧ ପରମାଣ । ସେ ତିଂଶଲକ୍ଷେକ ଯୋଜନ ॥
ଶୁଳ୍କ ଯେ ବସ୍ତାର ଅଟଇ । ଚୌତିଂଶ ଲକ୍ଷ ଯେ ଜୁଅଇ ॥
ତହିଁ ଯୋଚାଇ ଅଶ୍ୱ ହୋନ୍ତି । ଆଦିତ୍ୟ ଦେବଙ୍କୁ ବହନ୍ତି ॥
ଅରୁଣ ନିଯୁକ୍ତ ତହିଁରେ । ସପ୍ତ ଅଶ୍ୱ ଯେଉଁ ଠାବରେ ॥
ଅଙ୍ଗୁଷ୍ଠ ପର୍ବୁ ସାନ ହୋଇ । ଷାଠିସହସ୍ର ମୁନି ତହିଁ ॥
ବଦ୍ଧତେ ସେ କାଳ ଖେଳାବର । ରବିର ଅଗ୍ର ଯେ ଲାଗନ୍ତେ ॥
କେଶବ ସ୍ତୁତି ନାନାମତେ । ସ୍ତୁତି କରନ୍ତି ଯଥାଚତେ ॥
ଅନ୍ୟ ଯେ ନାନା ଋଷିଗଣ । ଗନ୍ଧର୍ବ ସିଦ୍ଧ ଯେ ଚାରଣ ॥
ସକଳ ନାଗଙ୍କ ସାରେ । ଅପ୍ସରଗଣ ଯେଉଁ ପରେ ॥
ସେ ଯାତୁଧାନ ଶ୍ରେଷ୍ଠଗଣ । ସଙ୍ଗେ ସେବନ୍ତି ନିତ୍ୟମାନ ।
ଅପ୍ସରଗଣେ ନୃତ୍ୟଗୀତେ । ଏମନ୍ତେ ଯେ ଯାହାର ମତେ ॥
ସେ ସୂର୍ଯ୍ୟରୂପ ଭଗବାନ । ଅଖିଳ ଆତ୍ମାର କାରଣ ॥
ତାହାର ଚରଣାରବିନ୍ଦେ । ସେବନ୍ତି ପରମ ଆନନ୍ଦେ ॥
ଯେଝାର କର୍ମ ଅନୁମତେ । ସେବନ୍ତି ତାର ପାଦଗତେ ॥

ନବକୋଟି ଶତ ଯୋଜନ । ଅଧିକ ଲକ୍ଷ ଏକାବନ ॥
ଏ ବେଳ ସହସ୍ର ଯୋଜନ । ଏମନ୍ତେ କୋଷ ଯେ ଭୁବନ ॥
କ୍ଷଣମାତ୍ରକେ ଭଗବାନ । ସେ ସୂର୍ଯ୍ୟ କରନ୍ତି ଭ୍ରମଣ ॥
ଅତ୍ୟନ୍ତ ତାହାଙ୍କ ଚରିତ । କହିଲେ ଛଡ଼ୁ ଜଗନ୍ନାଥ । ୪୮ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭୁବନକୋଷ
ବର୍ଣ୍ଣନେ ନାମ ଏକତ୍ରିଂଶୋଽଧ୍ୟାୟଃ ।



## ଦ୍ୱାତ୍ରିଂଶ ଅଧ୍ୟାୟ ।

ଦ୍ୱାତ୍ରିଂଶେ ସୋମଶୁକ୍ରାଦେଃ ସ୍ଥାନମାନୋତ୍ତରୋତ୍ତରଂ ।
ତତ୍ତଦ୍ଗତ୍ୟନୁସାରେଣ ଲକ୍ଷ୍ମାନନ୍ତୋ ତଥା ନୃଣାଂ ॥

ରାଜୋବାଚ ।

ହେ ମୁନି ଏଥିର ବଚନ । ଜାଣିବେ କିବଣ ପ୍ରଗୀତ ॥
ଅଚ୍ୟୁତଦେବ ନଟଆଚନ୍ତେ । ମେରୁ ପ୍ରଦକ୍ଷିଣ କରନ୍ତେ ॥
ଦ୍ୱାଦଶ ରାଶିଙ୍କ ସମ୍ମୁଖେ । ଭୋଗ କରନ୍ତି ସେ ପ୍ରତ୍ୟକ୍ଷେ ॥
ଅଚ୍ୟୁତ ଗତି ବ୍ୟଗ୍ରକରେ । ତହିଁରେ କେମନ୍ତେ ସଞ୍ଚରେ ॥
ଏଣେ ତ ମୋହର ସଂଶୟ । ହେ ମୁନି ଚଦନ୍ତି ଯେ କହ ॥

ଶ୍ରୀ ଶୁକ ଉବାଚ ।

କୁଲାଳଚକ୍ରର ସହିତେ । କ୍ଷୁଦ୍ର ଜନ୍ତୁଙ୍କ ଗତି ମତେ ॥
ସେ କାଳଚକ୍ରର ଅଧୃଷ୍ଟେ । ଭ୍ରମନ୍ତି ଯେ ଯାହାର ମତେ ॥
ଧ୍ରୁବର ସମ୍ମୁଖ ପ୍ରତ୍ୟକ୍ଷ । କରି ଭ୍ରମନ୍ତି ଅନ୍ତରୀକ୍ଷ ॥
ଆଦି ପୁରୁଷ ଭଗବାନ । ସାକ୍ଷାତ ପ୍ରଭୁ ନାରାୟଣ ॥
ଲୋକସ୍ୱରୂପ ତାଙ୍କ ମତ । କର୍ମ ବିଶୁଦ୍ଧିରେ ବହନ୍ତି । ୧୦ ।
ସେ ମୁକ୍ତିଦେବ ମୁଖାକାର । କରି ସେ ବ୍ରହ୍ମାଣ୍ଡ ଠାକୁର ॥
ଛଅଋତୁ ବସନ୍ତ ଆଦି । ଏଥିରେ ଯେତେକ ପ୍ରସିଦ୍ଧି ॥
ସେ ଋତୁ କାଳେ ଯେ ହୁଅନ୍ତି । ଅପଣେ ବିହାର କରନ୍ତି ॥
ମହାପୁରୁଷ ହୃଦ୍ୟମାନେ । ମାୟା ଯେ ନାନାଦି ବିଧାନେ ॥

ଅଶ୍ରମରୂପେ ନାନାପଥେ । ନାନା କର୍ମରେ ଯଥୋଚିତେ ॥
ନାନା ଯୋଗରେ ଶ୍ରଦ୍ଧା ଚିନ୍ତ । ଯେ ତାଙ୍କ ଚରଣେ ସେବନ୍ତି ॥
ସକଳ ପାପୁଁ ସେ ତରନ୍ତି । ପରମକଲ୍ୟାଣ ଲଭନ୍ତି ॥
ଏମନ୍ତେ ଶୁଣ ନୃପବର । ସେ ସୂର୍ଯ୍ୟ ଆତ୍ମା ପ୍ରାଣୀଙ୍କର ॥
ପୃଥ୍ୱୀ ଆକାଶ ମଧ୍ୟରେ । କାଳଚକ୍ରରେ ଯେ ସୁନ୍ଦରେ ॥
ଦ୍ୱାଦଶ ମାସକୁ ଭଜନ୍ତି । ସଂବତ୍ସର ନାମ ବହନ୍ତି । ୨୦ ।
ମାସ ଯେ ବେନିଭାଗ କରି । ଭୁଞ୍ଜନ୍ତି ଅହୋରାତ୍ର ପରି ॥
ସେ ବେନିମାସେ ଏକଋତୁ । ସଂବତ୍ସରରେ ଷଡ଼ଋତୁ ॥
ଯେ ବେନି ତାର ଅର୍ଦ୍ଧଭାଗେ । ରହନ୍ତି କାଳର ସେ ଭୋଗେ ॥
ତାହା ଅୟନ ବୋଲି ଜାଣି । ଶୁଣ ରାଜନ ପରମାଣି ॥
ଯେ ଅବା ମଣ୍ଡଳ ସହିତେ । ନଭୋମଣ୍ଡଳକୁ ଯାଆନ୍ତେ ॥
ରବି ଭୁଞ୍ଜନ୍ତି ଯେତେକାଳ । ସଂବତ୍ସର ବୋଲି ତାହାରେ ॥
ଏ ଅନନ୍ତରେ ଶୁଣ ରାଜନ । ଚନ୍ଦ୍ରର ଏହି ଯେ ଗମନ ॥
ଦ୍ୱିଲକ୍ଷ ଯୋଜନ ଉପରେ । ସମୀପ ପର ଯେ ବେଗରେ ।
ପ୍ରବଳ ଗତି ତାର ଝରେ । ଚନ୍ଦ୍ର ଭୁଞ୍ଜନ୍ତି ଯେ ସତ୍ୱରେ ॥
ତାହାଙ୍କ ଭୋଗ ବେନି ପକ୍ଷେ । ଚେନନକ୍ଷତ୍ର ପାଦ ଭକ୍ଷେ ॥
ଭୋଗ ସେ ଏକୁଁ ଏକ ଦିନେ । ଭୁଞ୍ଜନ୍ତି ଋତୁପତିମାନେ ॥
ଏଥୁଅନ୍ତରେ ନୃପବର । ଅବଧି କଳା ଶଶଧର ॥
ଅହୋରାତ୍ର ସେ ଦେବଙ୍କର । ଯେ ଶୁକ୍ଳପକ୍ଷର ବେଭାର ॥
ଅହୋରାତ୍ର ହେ ନୃପବର । ସେ ଯେ ସକଳ ପ୍ରାଣୀଙ୍କର ॥
ଏମନ୍ତ ଶୁଣ ନୃପବର । ଅବଧି କଳା ଶଶଧର ॥
ଭୁଞ୍ଜନ୍ତି ଦ୍ୱିସପ୍ତ ମୁହୂର୍ତ୍ତ । ଏକ ନକ୍ଷତ୍ର ଯଥୋଚିତ ॥
ଯେଣୁ ସେ ଅନାଦି ପୁରୁଷ । ଷୋଡ଼ଶ କଳା ଯେ ବିଶେଷ ।
ଅମୃତ ଶରୀରକୁ ଧରି । ପ୍ରାଣୀଙ୍କ ଅଜ୍ଞାନାନ୍ଧ ହରି ॥
ମନୁଷ୍ୟ ପଶୁ ପକ୍ଷୀ ଆଦି । ସରୀସୃପ ବୃକ୍ଷ ପ୍ରଭୃତି ॥
ଏହାଙ୍କୁ ସୁଖ ସେ ଦିଅନ୍ତି । ଏଣୁ ସେ ସର୍ବମୟ ହୋନ୍ତି । ୪୦ ।
ଏହାର ଊର୍ଦ୍ଧ୍ୱେ ଭୋ ରାଜନ । ଦ୍ୱିଗୁଣ ଲକ୍ଷ ଯେ ଯୋଜନ ॥
ନକ୍ଷତ୍ର ସପତବିଂଶତି । ମେରୁର ଦକ୍ଷିଣେ ବସନ୍ତି ॥

ଦ୍ୱି ଲକ୍ଷ ତାହାର ଉପରେ । ଉଶନା ବାସ ଯେଉଁଠାରେ ॥
ଆଦିତ୍ୟ ପ୍ରାୟ ସର୍ବଗତ । ତା ପରେ ବାହାକୁ ସେବନ୍ତ ॥
ଲୋକର କଲ୍ୟାଣ କାରଣ । ପ୍ରଥମେ ନିତ୍ୟ ପରିପୂର୍ଣ୍ଣ ॥
ଏହାର ଊର୍ଦ୍ଧ୍ୱେ ଯେ ଭାଗରେ । ଦ୍ୱି ଲକ୍ଷ ଯୋଜନ ଉପରେ ॥
ବୁଧ ନାମେ ଯେ ଚନ୍ଦ୍ରସୁତ । ତହିଁରେ ତାହାଙ୍କର ସ୍ଥିତ ॥
ପ୍ରାଣୀର ସୁଖେ ସୁଖ ଥାଇ । ଏଣୁ ସେ ଦୁର୍ଯ୍ୟେ ବେଗହୋଇ ॥
ଅତିଗମନ ଖରତରେ । ଅନାବୃଷ୍ଟି କି ସେ ଅଚରେ ॥
ତାହାଠ ପର ବେନିଲକ୍ଷେ । ଯୋଜନ ତେଜ ଯେ ପ୍ରତ୍ୟକ୍ଷେ ॥
ଏକ ରାଶିରେ ତିନିପକ୍ଷ । ମଙ୍ଗଳ ଭୁଞ୍ଜଇ ପ୍ରତ୍ୟକ୍ଷ ॥
ବକ୍ର ଭାଗରେ ଭୋଗ କରେ । ଏ କ୍ରମେ ଦ୍ୱାଦଶ ରାଶିରେ ॥
ଏହାର ଊର୍ଦ୍ଧ୍ୱେ ହୋ ରାଜନ । ଦ୍ୱି ଗୁଣ ଲକ୍ଷ ଯେ ଯୋଜନ ॥
ତହିଁ ଅଛନ୍ତି ବୃହସ୍ପତି । ଦେବଙ୍କ ପୁରୋହିତ ହୋନ୍ତି ॥
ଏକ ରାଶିରେ ସେ ବରଷ । ଭୋଗ ଯେ କରନ୍ତି ସନ୍ତୋଷେ ।
ସେ ବୃହସ୍ପତି ଭଗବାନ । ବ୍ରାହ୍ମଣକୁଳର କଲ୍ୟାଣ ॥
ଯେବେ ସେ ବକ୍ରଗତି ହୋଇ । କଦର୍ଯ୍ୟ ଫଳକୁ ଦିଅଇ ॥
ତହୁଁ ଦ୍ୱି ଲକ୍ଷ ଯୋଜନରେ । ନହିଁ ଅଛନ୍ତି ଶନୈଶ୍ଚରେ ॥
ଏକ ରାଶିରେ ଭୋଗ ତାର । ତିରିଶ ମାସ ନୃପବର ॥
ଅଶାନ୍ତି ସକଳେ କରଇ । ଅଧିକ କେବେ ବା ଭୁଞ୍ଜଇ ।୭୦।
ଏହାର ଉପରେ ରାଜନ । ଏକାଦଶ ଲକ୍ଷ ଯୋଜନ ॥
ଋଷିଙ୍କ ବାସ ଯେ ସେଠାରେ । ଯେ କୃପା କରନ୍ତି ପ୍ରାଣୀରେ ॥
ଲୋକଭାବନ ସେ ସକଳ । ଅଶେଷ କରୁଣାର ମୂଳ ॥
ଯେ ବିଷ୍ଣୁ ପାଦ ନିତ୍ୟ ଚିନ୍ତି । ପ୍ରତିକ୍ଷଣରେ ଭ୍ରମୁଛନ୍ତି ॥
ସେ ମୁନିଗଣଙ୍କ ପଛରେ । ସୁଜନେ ସେବ ନିରନ୍ତରେ ॥
କହଇ ଦ୍ୱିଜ ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ।୭୬।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ର-
ବର୍ଣ୍ଣନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।



# ତ୍ରୟୋବିଂଶ ଅଧ୍ୟାୟ ।

ତ୍ରୟୋବିଂଶେ ଧ୍ରୁବସ୍ଥାନଂ ଜ୍ୟୋତିଶ୍ଚକ୍ରାଶ୍ରୟଂ ତତଃ ।
ଶିଶୁମାର ସ୍ୱରୂପେଣ ଧ୍ୟେୟଶ୍ଚ ସ୍ଥିତିରୁଚ୍ୟତେ ॥

ଶ୍ରୀ ଶୁକ ଉବାଚ ।

ଏଥୁ ଅନ୍ତରେ ଭୋ ରାଜନ । ଊର୍ଦ୍ଧ୍ୱେ ଦଶଲକ୍ଷ ଯୋଜନ
ଯେ ସ୍ଥାନ ବିରାଜଇ ତହିଁ । ବିଷ୍ଣୁର ସ୍ଥାନ ତାକୁ କହି
ଯହିଁ ପରମ ଭାଗବତ । ଧ୍ରୁବ ଉତ୍ତାନପାଦ ସୁତ
ଅଛନ୍ତି କଶ୍ୟପ ସଙ୍ଗତେ । କାଳଯଷ୍ଟିର ସେବାମତେ
କଳ୍ପେ ପର୍ଯ୍ୟନ୍ତ ସୁଖେ ଭୋଳେ । ପ୍ରଭୁଙ୍କୁ ଭଜଇ ନିଷ୍ଠଳେ
ସେ ଭାଗବତ ଧ୍ରୁବବାଣୀ । ପୂର୍ବେ କହିଛି ନୃପମଣି
ଗ୍ରହ ନକ୍ଷତ୍ର ଜ୍ୟୋତିର୍ଗଣ । ଧ୍ରୁବର ସଙ୍ଗତେ ବନ୍ଧନ
କାଳଚକ୍ରର ଭ୍ରମମାନ । ବେଗେ ଭ୍ରମନ୍ତି ଅନୁକ୍ଷଣ
ଈଶ୍ୱର ଦୃଷ୍ଟି ଅଗୋଚରେ । ଈଷିତ ହୋଇ ଲୋକରେ
ଶୂନ୍ୟମଣ୍ଡଳ ମେଘମାଳେ । ଯେସନେ ଥାନ୍ତି ବାୟୁବଳେ
ମାୟୁଡ଼ି ପଶୁଗଣ ଯେହ୍ନେ । ସକଳେ ଭ୍ରମନ୍ତି ତେସନେ
ମଣ୍ଡଳ ଆକାରେଣ ତହିଁ । ଯେ ଯାହା ସ୍ଥାନେ ସେ ଭ୍ରମଇ
ଭଗଣ ଗ୍ରହଆଦି ଯେତେ । ଏହି ପ୍ରକାରେ ସେ ସମସ୍ତେ
କାଳଚକ୍ରର ଭ୍ରମ ପୁଣି । ଭ୍ରମଣ କରଇ ଗଗନ
କଳ୍ପ କଳ୍ପାନ୍ତେ ଏ ପ୍ରକାରେ । ଅନନ୍ତ ବିଷ୍ଣୁର ମାୟାରେ
ଖଗାଦି ନାନା ପକ୍ଷୀମାନେ । ପବନବଳେ ଥାନ୍ତି ଶୂନ୍ୟେ
କର୍ମ ଅଧୀନେ ଜ୍ୟୋତିର୍ଗଣେ । ଶୂନ୍ୟରେ ଭ୍ରମନ୍ତି ତେସନେ
ପ୍ରକୃତି ପୁରୁଷ ସମ୍ଭୋଗ । ତହିଁରେ ହୁଅନ୍ତି ସଂଯୋଗ
କର୍ମ ବନ୍ଧନ ନବନ୍ତରେ । ପତନ ହୁଅନ୍ତି ଭୂମିରେ । ୨୦
ଏଥୁ ଅନ୍ତରେ ପଣ୍ଡିତ । ଏ ଜ୍ୟୋତିର୍ଗଣ ବୈବସ୍ୱତ
ଏମନ୍ତ କର କେ ବର୍ଣ୍ଣିଇ । କହିବା ଶୁଣ ମନ ଦେଇ
ଯେ ପ୍ରଭୁ ଅଖିଳ କାରଣ । ବାସୁଦେବ ଯେ ଭଗବାନ
ତାହାଙ୍କ ଭକ୍ତି ମୁକ୍ତି ଯାର । ଶରୀର କୁଣ୍ଡଳୀ ଆକାର

ଅଧୋବଦନ ତାହାଙ୍କର । ପୁଚ୍ଛରେ ବାସ ଯେ ତାହାର ॥
ଲାଙ୍ଗୁଳେ ପ୍ରଜାପତି ବାସ । ତା ପରେ ଧର୍ମ ଯେ ବସିସ ॥
ଧାତା ବିଧାତା ପୁଚ୍ଛମୂଳ । ସପତ ଋଷି କଟିସ୍ଥଳେ ॥
ଦକ୍ଷିଣାବର୍ତ୍ତି ପ୍ରାୟ ହୋଇ । କୁଣ୍ଡଳ ଆକାରେଣ ଦେଖି ॥
ତାର ଦକ୍ଷିଣ ଅଂଶଗତେ । ନକ୍ଷତ୍ରମାନ ଯେ ସମସ୍ତେ ॥
ଅଭିଜିତ ଆଦ୍ୟ ଏ ଗଣ । ବାମ ପାଖରେ ତାଙ୍କ ସ୍ଥାନ ॥
ପୁନର୍ବସୁ ପୁଷ୍ୟା ଯେ ଦୁଇ । ବାମ ଦକ୍ଷିଣେ ଥାନ୍ତି ରହି ॥
ଆକାଶ ଗଙ୍ଗା ଯେ ପୃଷ୍ଠରେ । ଉଦରେ ଅତି ଶୁଭ୍ରତରେ ॥
ବାମ ଦକ୍ଷିଣ ପାଦଦେଶେ । ଆର୍ଦ୍ରା ଅଶ୍ଳେଷା ପ୍ରକାଶେ ॥
ଉତ୍ତରାଷାଢ଼ା ଅଭିଜିତ । ସବ୍ୟ ଦକ୍ଷିଣ ଘ୍ରାଣେ ସ୍ଥିତ ॥
ଶ୍ରବଣା ପୂର୍ବାଷାଢ଼ା ଦୁଇ । ଦକ୍ଷିଣ ବାମ ନେତ୍ରେ ରହି ॥
ଧନିଷ୍ଠା ମୂଳା ବେନି ଜନେ । ବାମ ଦକ୍ଷିଣ ବେନି କର୍ଣ୍ଣେ ॥
ମଘା ଓ ଅଶ୍ୱିନୀ ନକ୍ଷତ୍ର । ବାମଅର୍ଦ୍ଧିରେ ସେ ଯେ ସ୍ଥିତ ॥
ମୃଗଶିର ଦକ୍ଷ ଅର୍ଦ୍ଧିରେ । ଜ୍ୟେଷ୍ଠା ଶତଭିଷା ସ୍କନ୍ଧରେ ॥
ଜଗତେ ଯାର ଆଶ୍ରୟରେ । ଅଗସ୍ତି ନାସିକା ଉବରେ ॥
ମୁଖରେ ଅଙ୍ଗିରସ ଶୋଭେ । ଉପସ୍ଥେ ଶନୈଶ୍ଚର ରହେ ॥
ଆଦିତ୍ୟ ବକ୍ଷସ୍ଥଳେ ବସେ । ବୃହସ୍ପତି ଯେ କଣ୍ଠଦେଶେ ॥
ହୃଦରେ ନାରାୟଣ ସ୍ଥିତ । ଚନ୍ଦ୍ରମା ମନରେ ବସନ୍ତି ॥
ନାଭିରେ ଉଶନା ପ୍ରକାଶ । ସ୍ତନରେ ଅଶ୍ୱିନୀର ବାସ ॥
ପ୍ରାଣ ଉପରେ ବୁଧ ବସେ । ଗଳାରେ ରାହୁ ଯେ ପ୍ରକାଶେ ॥
ସର୍ବ ଅଙ୍ଗରେ କେତୁ ସ୍ଥାନ । ଏ ଅନୁକ୍ରମେ ଶୁଣ ରାଜନ ॥
ଲୋମମୂଳରେ ତାରାଗଣ । ବିଶ୍ୱରୂପ ନାରାୟଣ ॥
ଏରୂପେ ସର୍ବଦେବ ସେହି । ଯେ ଜନ ଶୁଚିମନ୍ତ ହୋଇ ॥
ସନ୍ଧ୍ୟାକାଳରେ ତା ସ୍ମରରେ । ଅଶେଷ ପାପରୁ ନିସ୍ତରେ ॥
ଯେ ସ୍ତବ ତୁଣ୍ଡେ ଉଚ୍ଚାରନ୍ତି । ଶୁଣ ସାବଧାନେ ସେ ସ୍ତୁତି ॥
ନମୋ ଅଶେଷ ଲୋକମୟ । କାଳ ଅଦ୍ଭୁତ ତୋର ଦେହ ॥
ସକଳ ଦେବ ସ୍ୱାମୀ ତୁହି । ତୋ ପାଦେ ଅନନ୍ତେ ନମଇ ॥
ଗ୍ରହ ନକ୍ଷତ୍ର ତାରାଗଣ । ସର୍ବବାନ୍ଧବ ନାରାୟଣ । ୫୬ ।

ଯେ ନିତ୍ୟ ସନ୍ଧ୍ୟାବେଳେ ନର । ସ୍ମରଣେ କରେ ନମସ୍କାର ॥
ଅହୋରାତ୍ରର ପାପ ତାର । ଦହନ ହୋଇ ସତ୍ୱର ॥
କହଇ ବିପ୍ର ଜଗନ୍ନାଥ । ଭୂଷାଦ୍ରବନ୍ଧେ ଭାଗବତ ॥
ଯେ ଦେବମୟ ଯେ ଈଶ୍ୱର । ଅନାଦି ବ୍ରହ୍ମ ତ୍ରି ଠାକୁର ॥
ତାହାଙ୍କ ଚରଣକମଳେ । ମୋ ମନ ରହିବ ନିଶ୍ଚଳେ ॥
ସୁଜନେ ନ ଦେବେ ଦୋଷ । ଗୀତେ କହିଲି କ୍ଷୁଦ୍ରଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଗ୍ରହଚକ୍ରବର୍ଣ୍ଣନେ
ନାମ ତ୍ରୟୋବିଂଶୋଽଧ୍ୟାୟଃ



## ଚତୁର୍ବିଂଶ ଅଧ୍ୟାୟ ।

ଏବଂ ବିଲର୍ଦ୍ଧ୍ୱମର୍ଯ୍ୟାଦା ପାଳନଂ ବର୍ଣ୍ଣିତଂ ତଥା ।
ଅଧୋଭୁବନ ମର୍ଯ୍ୟାଦା ପାଳନଂ ବିଭରୂଚ୍ୟତେ ॥

ଶ୍ରୀ ଶୁକ ଉବାଚ ।

ଆଦିତ୍ୟଠାରୁ ଅଧୋମେଳେ । ଅୟୁତ ଯୋଜନର ତଳେ ॥
ଭୂମି ଆକାରେ ଗ୍ରହ ସ୍ଥିତ । କେ ଅବା କେମନ୍ତ କହନ୍ତି ॥
ଶୁଣିବେ ହିଂସ୍ରକାନନ । ଏହି ଅପୂର୍ବ ଭେଦ ଗହନ ॥
ଯେଣୁ ପ୍ରଭୁର କୃପା ହୋଇ । ଅମୃତ ଗ୍ରହ ଏ ଅଟଇ ॥
ଏହାର ଚାନ୍ଦ୍ର କର୍ମମାନ । ପଛେ କହିବା ହେ ସୁଜନ ॥
ଅଧୋଭାଗରେ ଯେ ପଡଇ । ତରଣିମଣ୍ଡଳ ବୋଲଇ ॥
ଅୟୁତେ ଯୋଜନ ବିସ୍ତାର । ଲୋକଙ୍କର ଖ୍ୟାତି ନୃପବର ॥
ଦ୍ୱାଦଶ ସହସ୍ର ଯୋଜନ । ଚନ୍ଦ୍ରମଣ୍ଡଳ ଯେ ପ୍ରମାଣ ॥
ଏ ଦଶସହସ୍ର ମତେ । ଚନ୍ଦ୍ରର ମଣ୍ଡଳ ଯୁକତେ ॥
ବୈରାନୁଭବ ବୁଦ୍ଧି ତହିଁ । ଚନ୍ଦ୍ର ସୂର୍ଯ୍ୟ ଗ୍ରାସିବା ପାଇ ।୧୦।
ଧାମଇଁ ବେଗବନ୍ତ ହୋଇ । ତା ଦେଖି ବ୍ରହ୍ମାଣ୍ଡରେ ସାଇଁ ॥
ରକ୍ଷାନିମନ୍ତେ ଭଗବାନ । ଦେଇଅଛନ୍ତି ସୁଦର୍ଶନ ॥
ଚନ୍ଦ୍ରର ଆଦିତ୍ୟର ସ୍ଥଳ । ନିକଟହିଁ ନିବୃତ୍ତ ଯେ ହୋଇ ॥
ଚକିତ ହୋଇ ଛନ୍ତି ତାର । ହୃଦବେଗ ହୁଅଇ ଶରୀର ॥

ତାହାଙ୍କ ଉପଚାର ନାମ । ଏ ଶ୍ଳୋକେ କରନ୍ତି ଗାୟନ ॥
ନାହାନ୍ତି ତଳେ ଭୋ ସୃଜନ । ପ୍ରତ୍ୟେକ ଅଛଇ ପ୍ରମାଣ ॥
ଅନ୍ଧକ ଶିବେ ମର୍ଦ୍ଦମାନ । ତହିଁ ଦାଣବ ଉଦ୍ଭଟମ ॥
ବ୍ୟାଧିର ପରଭବ ନାହିଁ । ଦେହରେ ରୋଗ ନ କରଇ ॥
ନଗର ଗନ୍ଧର୍ବରେ କରି । ସପ୍ତ ଭୁବନ ଦଣ୍ଡଧାରୀ ॥
ଅତଳ ବିତଳ ସୁତଳ । ତଳାତଳ ଯେ ରସାତଳ ।୬୦।
ମହାତଳ ଯେ ତଳାତଳ । ଅନୁକ୍ରମେ ସପତ ପାତାଳ ॥
କ୍ରମେ ଅୟୁତେ ଯେ ଯୋଜନ । ଏକୁଁ ଏକର ଯେ ପ୍ରମାଣ ॥
ବିଳସ୍ୱର୍ଗ ନାମ ଏହାର । ସ୍ୱର୍ଗୁଁ ଅଧିକ ସୁଖତର ॥
ଧାମ ଐଶ୍ୱର୍ଯ୍ୟ ନାନା ଭୋଗ । ନାନା ଆନନ୍ଦ ସୁଖଭୋଗ ॥
ନାନା ରତ୍ନରେ ଦିବ୍ୟପର । ଯୌବନେ ଉଦ୍ୟାନ ସୁନ୍ଦର ॥
ସୁସଜ୍ଜ ସ୍ଥଳ ମନୋହର । ବିବିଧ କ୍ରୀଡ଼ା ଯେ ବିହାର ॥
କହିବା ଶୁଣ ନୃପବର । ବିଳସ୍ୱର୍ଗ ନାମ ଏହାର ॥
ଏଥିରେ କ୍ରୀଡନ୍ତି ଆନନ୍ଦେ । ଯେ ସ୍ଥଳବାସୀ ଜୀବବୃନ୍ଦେ ॥
କଦ୍ରୁଜ ଦାନବ ଦଇତେ । ଅପତ୍ୟ ପତ୍ନୀର ସହିତେ ॥
ମାୟାବିମାନେ ଶତ ତହିଁ । ନିର୍ମାଣ କରି ଯେ ଅଛଇ ॥
ନାନା ମଣିରେ ଦିବ୍ୟପୁର । ବିବିଧ ବୈଦୂର୍ଯ୍ୟର ଘର ॥
ସୁସଜ୍ଜ ଅତି ମନୋହର । ବିବିଧ ନାନା ମଣିସାର ॥
ମିଥୁନ ଶୁକ ପାରାବତ । କୃତ୍ରିମ ମଣିରେ ନିର୍ମିତ ॥
ସାରିକା ଆଦି ପକ୍ଷୀମାନେ । ବିବିଧ ପ୍ରକାରେ ଭୂଷଣେ ॥
ମଣି ଦର୍ପଣ ହୃଦ ସାର । ଶୋଭଇ ଅତି ମନୋହର ॥
ବିବିଧ ରଚନ ଉଦ୍ୟାନ । ନାନା ଜାତିରେ ଫଳମାନ ॥
କୁସୁମମଳ ଅନ୍ତଭରେ । ବଲ୍ଲୀ ଲମ୍ବିଛନ୍ତି ତଳେ ॥
କୋମଳପଲ୍ଲବ ସୁରଙ୍ଗ । ପକ୍ଷୀ ମିଥୁନ ଯହିଁ ସଙ୍ଗ ॥
ବିବିଧ ଜଳାଶୟମାନ । କ୍ରୀଡନ୍ତି ନାନା ବିହଙ୍ଗମ ॥
ଝଷଙ୍କ ପୃଷ୍ଠ ଆହରଣେ । କ୍ଷୋଭ କରନ୍ତି ବିହଙ୍ଗମେ ।୭୦।
ନୀରଜ କୁମୁଦ କହ୍ଲାର । ଏହାର ତଳେ ତାଙ୍କ ଘର ॥
ଯେ ଉଷିତଣ ଦିବ୍ୟସ୍ୱନ । ଶ୍ରବଣେ ହରେ ପ୍ରାଣିମନ ॥

ସ୍ୱର୍ଗନ୍ତୁ ଅତି ମନୋହର । ସେ ସ୍ଥଳମାନ ନୃପବର ॥
ଅନ୍ତଙ୍କ ଶିରତ୍ନମଣିମାନ । ଯହିଁ ନାଶଇ ଅନ୍ଧତମ ॥
ବ୍ୟାଧିର ପରାଭବ ନାହିଁ । ଦେହରେ ରୋଗ ନ ରହଇ ॥
ପୁରୁଷ ଅବତାରଙ୍କର । ଏଣୁ ସେ ସ୍ୱଭାବ ଶରୀର ॥
ତେଣୁ ସେ ସମସ୍ତ ହୁଅଇ । ବଟୁବାମନ ରୂପ ହୋଇ ॥
ଯଣ ସମ୍ପଦ ତାର ହରି । ପୁଣି ଦୟା କଲେ ମୁରାରି ॥
ଇନ୍ଦ୍ରାଦି ସୁରଗଣମାନେ । ସମ୍ପଦ ଦେଲେ ଭଗବାନେ ॥
ପୁଣି ଅଖିଳ ପ୍ରାଣୀଙ୍କର । ଅନାଦି ପ୍ରଭୁ ଯେ ଈଶ୍ୱର ॥
ପୃଂସ୍ତୋକଳାଦି ପ୍ରାଣୀଙ୍କର । ଯେଣୁ ସ୍ୱଭାବ ଯେ ଶରୀର ॥
ତେଣୁ ସେ ସମସ୍ତେ କ ହୋଇ । ଅନ୍ୟଥା ବ୍ୟାଧି ମୃତ୍ୟୁ ନାହିଁ ॥
ଅନେକ କାଳ ମହୀପାଳ । ମନୁର ପୁତ୍ର ସ୍ୱରବଳ ॥
ଯାହାର ମାୟା ବୃତ୍ତତରେ । ଅଦ୍ୟାପି ସଂସାରେ ପଡ଼ରେ ॥
ଯେ ରୂପ ଧଇଲା ଏ ତନ । ନେସ୍ୱରଣୀ ବୃକ୍ଷକୀ କାମିନୀ ॥
ହୃଷୀକେଷ ଯେ ମାୟାଳସ । ତହିଁରେ ଥାଇଣ ପୁରୁଷ ॥
ବିଳାସ ଅବଲୋକନରେ । ନାନାପ୍ରକାରେ କ୍ରୀଡ଼ା କରେ ॥
ଅଯୁତେ ମହାନାଗବଳ । ଯାର ମାୟାରେ ମହୀପାଳ ॥
ରଚଲେ ଶମ୍ଭୁ ଭଗବାନ । ହୃଷୀକେଶ୍ୱର ଯାର ନାମ ॥
ପ୍ରଜାପତି ପୃଷ୍ଟି ନିମନ୍ତେ । ଅଛନ୍ତି ଭଟାଣୀ ସହିତେ ।
ଏହାଙ୍କ ସର୍ଗିଁଏ ଜାତ ହୋଇ । ହ୍ରାଦିନୀ ନାମେ ନଦୀ ବହି ॥
ତାର ସଂସର୍ଗୁ ଜାତ ହୋଇ । ସୁବର୍ଣ୍ଣ ହାଟକ ବୋଲାଇ ॥
ଅସୁରଙ୍କର ବଧୂଗଣ । ତାହାକୁ କରନ୍ତି ଭୂଷଣ ॥
ସୁତଳେ ବଳି ଯାର ନାମ । ତାହାର ଗୃହ ଶ୍ରେ ରଜନ ॥
ଉଦାରଶ୍ରବା ପୁଣ୍ୟଶ୍ଳୋକ । ଯାହାକୁ କହ ସୁରଲୋକ ॥
ଇନ୍ଦ୍ରର ପ୍ରିୟଭାବ ବହି । ଅଛନ୍ତି ଅଖିଳ ଗୋସାଇଁ ॥
ଅଦିତି ତହୁଁ ଜାତ ହୋଇ । ବଟୁବାମନ ରୂପ ବହି ॥
ସମ୍ପଦ ନାଶ ତାର କରି । ପୁଣି ଦୟା କଲେ ମୁରାରି ॥
ଇନ୍ଦ୍ରାଦି ସୁରଗଣମାନ । ସମ୍ପଦ ଦେଲେ ଭଗବାନ ॥
ପୁଣି ଅଖିଳ ଦେବଙ୍କର । ଅନାଦି ପ୍ରଭୁ ଯେ ଈଶ୍ୱର

ସ୍ୱକର୍ମେ ତାଙ୍କୁ ଆରାଧଣ  ନିତ୍ୟେ ସେ ଅଛି ହୋ ରାଜନ ॥
ସେ ସର୍ବବୀଜ ଭଗବାନ । ପରମଆତ୍ମା କୃଷ୍ଣ ବ୍ରହ୍ମ ॥
ଯେ ତୀର୍ଥମୟ ଜଗନ୍ନାଥ । ସକଳ ଦେଶ କାଳପାତ୍ର ॥
ତହିଁରେ ଶ୍ରଦ୍ଧାଯୁକ୍ତ ହୋଇ । ସ୍ଥିର ମନରେ ସ୍ତୁତି ଗାଇ ॥
ତଳସ୍ୱର୍ଗକୁ ଭୋଗ କରେ । ନାନା ଐଶ୍ୱର୍ଯ୍ୟ ସେ ବେଢରେ ॥
ଜୀବରକ୍ଷଣେ ଯେ ଉପାୟ । ତହିଁରେ କର ଦେବରାୟ ॥
ତ୍ରୈଲୋକ୍ୟବ୍ୟାପୀ ସେ ଈଶ୍ୱର । ଶେଷ ନ ରହିଲା ଯହିଁର ॥
ସେ ରୁଦ୍ର ତପବଳେ କରି । ଇନ୍ଦ୍ରର ଭ୍ରାତୃଭାବ ଧରି ॥
ଜନ୍ମିଲେ ବ୍ରହ୍ମାଣ୍ଡଠାକୁର । ଷାର ଜନମେନ୍ତ୍ର ନୃପବର ॥
ସେ ସର୍ବଜୀବ ଭଗବାନ । ଅଖିଳଗୁରୁ ନାରାୟଣ । ୮୦ ।
ଯାହାର ଦ୍ୱାରେ ଗଦା ଧରି । ଅଛନ୍ତି ପ୍ରଭୁ ଯେ ଜଗିର ॥
ଏହାର ଅଧୋଦେଶେ ଯାଇଁ । ତଳାତଳ ନାମ ବୋଲାଇ ॥
ମୟ ନାମେ ଦାନବବରେ । ଦ୍ରୋହ ସେ କଲା ଚକ୍ରଧରେ ॥
ସେ ପୁର ତାର ଦଗ୍ଧ ହେଲା । ତେଣୁ ସେ ବରକୁ ଲଭିଲା ॥
ମାୟାବୀମାନଙ୍କର ବର । ଐଶ୍ୱର୍ଯ୍ୟ ହୋଇ ସେ ଅସୁର ॥
ଏମନ୍ତ ବରକୁ ସେ ପାଇ । ତଳାତଳରେ ସେ ଅଛଇ ॥
ସୁଦର୍ଶନଚକ୍ରର ଡରେ । ଶରଣ ପଶିଲା ଶମ୍ଭୁରେ ॥
ସେ ଭୟ ତାର ଦୂର କରି । ରଖିଲେ ଶିବ ଶୂଳଧାରୀ ॥
ନିର୍ଭୟ ହୋଇ ସେ ଦାନବ । ସ୍ୱଚ୍ଛନ୍ଦେ ଭୁଞ୍ଜଇ ସମ୍ପଦ ॥
ତାହାର ଅଧୋଭାଗ ଦେଶେ । ମହାତଳପୁର ପ୍ରକାଶେ । ୯୦ ।
ଯହିଁରେ କାଦ୍ରବର ଅଢ଼ । କ୍ରୋଧବଶ ନାମ ପ୍ରସିଦ୍ଧି ॥
କୁହ୍ନନାଗ ଯେ ଅଶ୍ୱସେନ । ତକ୍ଷକ ଇନ୍ଦ୍ରାଯ୍ନ ନାମ ॥
ମହାପୁରୁଷ ବଳବନ୍ତ । ତହିଁ ଅଛନ୍ତି ପସ୍ୱଷିତ ॥
ନିତ୍ୟ ବଇନତେୟ ଭୟେ । ଉଦ୍ବେଗ ହୋଏ ତାଙ୍କ କାୟେ ॥
ଦାର ତନୟ ବନ୍ଧୁ-ସଙ୍ଗେ । ମତ୍ତେ ବିହରନ୍ତି ସେ ରଙ୍ଗେ ॥
ତାହାର ତଳେ ମହୀପାଳ । ଯେ ପୁର ନାମ ରସାତଳ ॥
ଦାନବ ଦୈତ୍ୟପଣିମାନ । କବଚ କାଳକା ହିରଣ୍ୟ ॥
ଅତ୍ୟନ୍ତ ବଳବନ୍ତ ହୋଇ । ଦେବଙ୍କୁ ଦ୍ରୋହ ସେ ଚିନ୍ତଇ ॥

ସକଳ ଲୋକର କାରଣ । ମହାପୁରୁଷ ନାରାୟଣ ॥
ମହାନୁଭବ ସେହ୍ନ ହର । ତାହାଙ୍କ ଅତି ତେଜୁଁ କର ।୧୦୦।
ବୃଷାତ ତେଜ ସେ ଦାନବ । ସେ ସ୍ଥାନେ ହୁଅନ୍ତି ଉଦ୍ଭବ ॥
ଯେ ଇନ୍ଦ୍ରବାକ୍ୟ ମନ୍ତ୍ର ପୃଣି । ନିତ୍ୟେ ଡରନ୍ତି ନୃପମଣି ॥
ଏହାର ତଳେ ଯେ ପାତାଳ । ତହିଁ ଅଛନ୍ତି ନାଗବଳ ॥
ବାସୁକୀ ଆଦି ନାଗବର । ଶଙ୍ଖ କୁଳିକ ଯେ କମ୍ବଳ ॥
ଧନଞ୍ଜୟ ଯେ ଦେବଦତ୍ତ । ଧୃତରାଷ୍ଟ୍ରାଦି ଶଙ୍ଖ ଶ୍ୱେତ ॥
ଏ ଯେତେ ମହାଭୋଗୀମାନେ । ବସନ୍ତି ପାତାଳଭୁବନେ ॥
ପଞ୍ଚ ସପତ ଦଶ ଶର । ଅନେକ ଫଣା ବା କାହାର ॥
ଏହାଙ୍କ ମଥାମଣିମାନ । ପ୍ରକାଶ ଆଦିତ୍ୟ ଯେସନ ॥
ପାତାଳ ବିବର ତମିର । ସ୍ୱତେଜେ କରନ୍ତି ଯେ ଦୂର ॥
ପଞ୍ଚମସ୍କନ୍ଧେ ଏ ବର୍ଣ୍ଣନ । ସୁଜନେ ସାବଧାନେ ଶୁଣ ।୧୦୧।
କହଇ ବିପ୍ର ଜଗନ୍ନାଥ । ଭୂଷାତ୍ରବନ୍ଧେ ଭାଗବତ ॥
କୃଷ୍ଣଚରଣେ ମନ ଦିଅ । ସୁଜନେ ନିତ୍ୟେ ଏହା ପିଅ ॥
କଞ୍ଜପାଦର ସୁଧାରସ । ମୋ ଜିହ୍ୱା ନିତ୍ୟେ କରୁ ଗ୍ରାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭୂଗୋଳବର୍ଣ୍ଣନେ ନାମ ଚତୁର୍ବିଂଶୋଽଧ୍ୟାୟଃ ।



## ପଞ୍ଚବିଂଶ ଅଧ୍ୟାୟ ।

ପଞ୍ଚବିଂଶେ ତତୋଽଧସ୍ତାଦାହ ଶେଷସ୍ୟ ସଂସ୍ଥିତିଂ ।
ସଂକର୍ଷଣୋଽୟଦଂ କାଳେ ଯତୋ ରୁଦ୍ରସମୁଦ୍ଭବଃ ॥

ଶ୍ରୀ ଶୁକ ଉବାଚ ।

ତାହାର ତଳେ ହେ ରାଜନ । ତିରିଶସହସ୍ର ଯୋଜନ ॥
ତାମସୀକଳା ଯେ ବିଶେଷ । ଅତ୍ୟନ୍ତ ନାମେ ଯେ ପ୍ରକାଶ ॥
ଯେ ବିଷ୍ଣୁ ଅଂଶେ ଜନ୍ମ ହୋଇ । ଯେ ସଙ୍କର୍ଷଣ ନାମ ବହି ॥
ଅନନ୍ତ ନାମେ ଯେ ଈଶ୍ୱର । ତାଙ୍କର ସହସ୍ର ଯେ ଶିର ॥
ଯାହାର ଏକଇ ଶିରରେ । ମହୀମଣ୍ଡଳ ଯେ କ୍ଷିତଳେ ॥

ଯେ ସୃଷ୍ଟି କରଇ ସଂହାର । ଭ୍ରୂକୁଟି କରଣ କରାଳ ॥
ଏକାଦଶ ଯେ ରୁଦ୍ର ହୋଇ । ସଂକର୍ଷଣ ଯେ ନାମ ବହି ॥
ତିନିଲୋଚନ ପଞ୍ଚ ଶିର । ପ୍ରଚଣ୍ଡ ଶୂଳ ଯାର କର ॥
ଯାହାର ଚରଣ କମଳ । ତହିଁକ ନଖ ଯେ ମଣ୍ଡଳ ॥
ଭକ୍ତିବନ୍ତ ଅନ୍ଧପନ୍ତମାନ । ଯହିଁରେ କରନ୍ତି ବନ୍ଦନ ॥ ୧୦ ।
ଶିରେମଣିରେ ନଖପନ୍ତି । ଚନ୍ଦ୍ରକୁ ଜିଣି ଦିଶେ ଜ୍ୟୋତି ॥
ଯାହାର ବଦନାରବିନ୍ଦ । ଚକ୍ଷୁ ନିରେଖିଣ ଆନନ୍ଦ ॥
ପରମଭକ୍ତ ଯୋଗ ଗତେ । ମୁଣ୍ଡ ପ୍ରଣବ ଯେ ମଣ୍ଡିତେ ॥
ଗଣ୍ଡଯୁଗଳ ଦୁଷ୍ଟଚିତ୍ତ । ଯେ ସଙ୍କର୍ଷଣ ହୃଦଗତ ॥
ଯାହାକୁ ବରଧ ବଧାଟନ । ସେବନ୍ତି ନାଗକନ୍ୟାମାନେ ॥
ଏମନ୍ତ ରୂପ ମନୋହର । ବୃଷଭ ଧବଳଶରୀର ॥
ଚପଳ ବକ୍ଷସ୍ଥଳେ ହାର । ବିଶୁଦ୍ଧ ଚନ୍ଦନ ରୁଚିର ॥
ହଳିମୂଷଳ କରେ ଯାର । ଏ ଅବା ଦେବା ପଠାନ୍ତର ॥
ରଜତସ୍ତମ୍ଭ ଭୁଜଦୁଇ । ମନ୍ଦମନ୍ଦରେ ଯେ ଶୋଭଇ ॥
ମଦେ ମୁଦ୍ରିତ ଯେ ଲୋଚନ । ସେ ଯେ ଅନନ୍ତ ଭଗବାନ ॥
କ୍ରୋଧ କୁଟିଳ କୁସଙ୍ଗରେ । ତହିଁରେ ଅଛନ୍ତି ଠାକୁରେ ॥
ଉରଗେଶ୍ୱର ଯେ ଠାକୁର । ସିଦ୍ଧ ଗନ୍ଧର୍ବ ବିଦ୍ୟାଧର ॥
ଅଶେଷ ମୁନିଗଣ ଯେତେ । ଆନନ୍ଦ ଯେ ଯାହାର ମତେ ॥
ଦନ୍ତରେ ପାର୍ଷଦଗଣ । ସେବନ୍ତି ଯାହାର ଚରଣେ ॥
ନବ ତୁଳସୀ ପୁଷ୍ପ ଶିରେ । ଗନ୍ଧ ଆମୋଦ ସେ ପ୍ରକାରେ ॥
ଗନ୍ଧେ ମଧୁକର ନିକର । ଧ୍ୱନି କରନ୍ତି ମନୋହର ॥
ସୁନ୍ଦର ଭୁଜ ଲମ୍ବମାନ । ମାଣ୍ଡନ୍ଦ୍ର ବାରଣ ଯେସନ ॥
ଧ୍ୟାନ ଶ୍ରବଣ ଯୋଗସାରେ । କଳି କଳ୍ମଷ ପାପ ହରେ ॥
ଶ୍ରଦ୍ଧା ଅରତେ ଯେବା ଜନ । ଯେତେବ କରଇ ସ୍ମରଣ ॥
ତାହାର ଅନୁଭବମାନ । ନାରଦମୁନି ଯେ ବଚନ ॥ ୩୦ ।
ବ୍ରହ୍ମସଭାରେ ବସ୍ତାଇଲେ । ସକଳେ ଶୁଣି ନିସ୍ତରିଲେ ॥
ଯାହାର କଟାକ୍ଷକୁ ପାଇ । ଉତ୍ପତ୍ତି ସ୍ଥିତି ଲୟ ହୋଇ ॥
ଯାହାର ନାମ ସୁମରଣ । ଶ୍ରବଣ କୀର୍ତ୍ତନ ସଜନ ॥

ଘୋର ଦୁର୍ଗମେ ନର ଥାଇ । ଯେବେ ଅରତେ ସୁମରଇ ॥
ଅପଦ ହୋଇ ତାର ଦୂର । ସକଳ ପଥୁଁ ହୋଏ ପାର ॥
ଅଷ୍ଟସ୍ତୁ ହୋଏ ଈଶ୍ୱରରେ । ମୋତେ ପାଇବ ସେହୁ ନରେ ॥
ଭୂଗୋଳ ନାନା ନଦୀ ଗିରି । ଦ୍ୱୀପ ସମୁଦ୍ର ଆଦି କରି ।
ଯାହାର ମସ୍ତକେ ଜଗତ । ସୃଷ୍ଟିରେ ଅଛଇ ପରୀକ୍ଷିତ ।
ଅନନ୍ତ ବିକ୍ରମ ଯେ ପୁରୁଷ । କେ କହୁ ତାଙ୍କର ବିଶେଷ ॥
ଯେ ଅସ୍ୱାଭାବେନ୍ତେ ଭଗବାନ । କେ କହୁ ତାଙ୍କ ଗୁଣଗ୍ରାମ ॥
ଲୀଳାମାନଙ୍କେ ସେ ସଂସାର । ଯେ ଧରିଅଛି ବିଶ୍ୱମ୍ଭର ।
ଏମନ୍ତ ପ୍ରଭାବ ଯାହାର । ଦୁରିତନାଶ ସେ ଠାକୁର ॥
ସେବକ ହେବା ଜୀବଗତ । କର୍ମରୁ ଯେ ଯାହା ଭୁଞ୍ଜନ୍ତ ॥
ଯାହାର ସ୍ଥଳନ୍ତି ଏମନ୍ତ । ସକଳ କହିଲୁଁ ବିହିତ ।
ଯାହାର ଯେମନ୍ତ ଲକ୍ଷଣ । ଯେ ଧର୍ମ ଯାର ଆଚରଣ ।
ଯେଉଁ ସମସ୍ତ ଜୀବଜନ୍ତୁ । ଯାହାର ଯେ କର୍ମ ଯେ ହେତୁ ॥
ତୁମ୍ଭ ପ୍ରଶ୍ନ ଅନୁସାରେ । ସକଳ କହିଲୁଁ ତୁମ୍ଭରେ ॥
ଏବେ କି ତୁମ୍ଭ ଅଭିଳାଷ । ଅପଟେ କହିବୁଁ ବିଶେଷ ॥
କହଇ ବିପ୍ର ଜଗନ୍ନାଥ । ହରିଚରିତ ଭାଗବତ । ୪୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ଭୂଗୋଳ
ବର୍ଣ୍ଣନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।



## ଷଡ଼୍‌ବିଂଶ ଅଧ୍ୟାୟ ।

ପରୀକ୍ଷିତ ଉବାଚ ।

ଷଡ୍‌ବିଂଶେ ତୁ ତତୋଽଧସ୍ତାତ୍ ନରକସ୍ଥିତିରୁଚ୍ୟତେ ।
ପାପିନୋ ଯତ୍ର ଦଣ୍ଡ୍ୟନ୍ତେ ଯମଦୂତୈର୍ଯଥାଯଥଂ ॥

ବିଚିତ୍ର ଗତି ଲୋକଙ୍କର । ତୁମ୍ଭେ କହିଲ ମୁନିବର ॥
ଏ କଥା ସଂଶୟ ମୋ ମନ । ଏବେ କହିବା ବିବ୍ୟଜ୍ଞାନ ॥

ଶ୍ରୀ ଶୁକ ଉବାଚ ।

ନିର୍ଗୁଣେ ପରିହ କୁଅଇ । ଶୁଣ ପରୀକ୍ଷ ମନ ଦେଇ ॥

କର୍ମ୍ମ ଯେମନ୍ତେ ଅଙ୍ଗ ପାଇ । ଶ୍ରଦ୍ଧା ଅଶ୍ରଦ୍ଧା ଭେଦ ହୋଇ ॥
ସକଳ ଏକଭାବ ହୋଇ । କେବେହେଁ କେହୁ ନ ଭଜଇ ॥
ଏଥୁ ଅନ୍ତରେ ଏବେ ଶୁଣ । ପ୍ରତିମିଶ୍ରର ଯେ ଲକ୍ଷଣ ॥
ଅଧର୍ମ ଧର୍ମ ବେଦ ମତ । ଶ୍ରଦ୍ଧା ଅଶ୍ରଦ୍ଧା ଯେ ବହତ ॥
ସମାନ କର୍ମ ଫଳମାନ । ତାହାର ନୋହେ ଶୁଣ ରାଜନ ॥
ଯେତେ ଅବିଦ୍ୟା କାମକର୍ମ । ଏହ ଲକ୍ଷଣେ ଅନୁମାନ ॥
ଶ୍ରୁତ ଚରଣେ ଦେଇ ମତ । ପ୍ରବୃତ୍ତି ହୋଏ ପଞ୍ଚବିଧ ॥
ଏହାର ଚତ୍ତ ଅମୋଦରେ । ଚିତ୍ତାର ବର୍ତ୍ତିବ ଅଗରେ ॥

ପରୀକ୍ଷିତ ଉବାଚ ।

ହେ ମୁନି ତ୍ରୈଲୋକ୍ୟ ବାହାରେ । ନରକେ କେତା ଅନ୍ତଃ ଲେ ॥
କି ଅବା ଭୁବନ ମଧ୍ୟରେ । କହିବା ତା ସାବଧାନରେ ॥

ଶ୍ରୀ ଶୁକ ଉବାଚ ।

ତ୍ରିଜଗତର ଅନ୍ତରାଳ । ଦକ୍ଷିଣଦିଗ ମଣ୍ଡପାଳ ॥
ଅର୍ଦ୍ଧଦେଶ ଭୂମି ଉପରେ । ଅଗ୍ନି ସମ୍ଭାଇ ସେ ଉଦରେ ॥
ସକଳ ପିତୃଗଣ ଯେତେ । ସ୍ୱଗୋତ୍ର କଲ୍ୟାଣ ନିମନ୍ତେ ॥
ଯହିଁ ବସନ୍ତି ହେ ରାଜନ । ଯେଉଁ ଅନ୍ତକ ଭଗବାନ ॥
ଅନ୍ତେ ଜୀବଙ୍କୁ ଯହିଁ ନିଅନ୍ତି । ଯମପୁରେ ଦଣ୍ଡ ଦିଅନ୍ତି ॥
ଦୋଷ ଯେ କର୍ମ ଅନୁସାରେ । ଯେ ପ୍ରାଣୀ ଯେ କର୍ମ ଆଚରେ ॥
ଭଗବାନ ଆଜ୍ଞା ଲଙ୍ଘିଣ । କହିବା ଶୁଣ ହେ ରାଜନ ॥
ତାହାଙ୍କୁ ଶୁଦ୍ଧି ଦଣ୍ଡଧର । ଶାସ୍ତି ଯେ ଦିଅନ୍ତି ଅପାର ॥
ବସନ୍ତି ନେଇ ଯାହା ବେଢ଼'ରେ । ନରକ ଅଛନ୍ତି ଯହିଁରେ ॥
ଏହା ରୂପ ନାମ ଲକ୍ଷଣ । କହିବା ଶୁଣ ହୋ ରାଜନ ॥
ଅନ୍ଧକୂପ ଯେ ଅଶୀପତ୍ର । ଶୂକରମୁଖ କାଳସୂତ ॥
ରୌରବ ଯେ ମହା ନରକ । ଅନ୍ଧତାମିସ୍ର କୁମ୍ଭୀପାକ ॥
ତାମସେ କୃମି ଯେ ଭୋଜନ । ମହଣ ସପ୍ତ ସପ୍ତ ନାମ ॥
ଚଣ୍ଡ ପ୍ରଚଣ୍ଡ ସେ ଶାଲ୍ମଳ । ବଇତରଣୀ ମହାଜଳ ॥
ପ୍ରାଣରୋଧନ ଯେ ବେଗନ । ପୁରେବସାରେ ଯେ ଅଦନ ॥
ନାନା ଭ୍ରମସ୍ଥବରୁ ନାମ । ଅପରେ ଅସୁ ଯେ ପତନ ॥

ଶୂଳ ପ୍ରୋତାଷର ବର୍ଦ୍ଧନ । ପରବେଧ କ୍ଷୀଣ ଭୋଜନ ॥
ଅବୋଃ ନିରୋଧକ ଆଉ । ଦଂଶୂକ ନାମ ଅତଃପର ॥
ଗଣ୍ଡନ୍ମୁଖୋଚ୍ଚାର୍ଯ୍ୟ କୀର୍ତ୍ତନ । ଅଷ୍ଟାବିଂଶତି ଏହୁ ନାମ ॥
ଏତେ ନରକ ମହୀପାଳ । ଶୁଣ ଯାତନାର ଫଳ ॥
ପରସ୍ତ୍ରୀ ପରବୃତ୍ତି ଧନ । ଯେ ପ୍ରାଣୀ କରଇ ହରଣ ॥
ସେ କାଳପାଶେ ବନ୍ଧୀ ନେଇ । ସତତ ନରକେ ପକାଇ ॥
ନାନା ଯାତନା ସେ ଭୁଞ୍ଜଇ । କର୍ମବନ୍ଧନେ ସେ ପଡ଼ଇ ॥
କ୍ଷୁଧା ପିପାସାରେ ପୀଡ଼ନ । ଦେହ ଯେ ଯମ ଦଣ୍ଡରେ ତାଡ଼ିତ ॥
ନାନା ତର୍ଜନ ହେ ତାହାର । ସେତେକ ଯାତନା ଭୟଙ୍କର ।
ପରମେ କଷ୍ଟ ବହି ପାଇ । କ୍ଷଣକ୍ଷଣକେ ମୋହ ଯାଇ ॥
ଅନ୍ଧତାମିସ୍ର ନରକରେ । ଯାତନା ଭୋଗ ପ୍ରାଣୀ କରେ ॥
ପର ଦାରରେ ପାପ କରି । ସେତେବେ ତାମସ ରୂପ ଧରି । ୪୧ ।
ତେବେ ପଡ଼ଇ ଶେଷେ ତହିଁ । ଯାତନା ନରକେ ଭୁଞ୍ଜଇ ॥
ନଷ୍ଟ ହୁଅଇ ମନ ତାର । ଦୃଷ୍ଟି ନାଶଇ ନୃପବର ॥
ମୋହେଣ ଗତଭାବ ହୋଇ । ଭୃତ୍ୟ ଦ୍ରୋହକୁ ସେ ଚିନ୍ତଇ ॥
କୁଟୁମ୍ବ ପାଇଁ ହିଂସା ବନ୍ଧ । ସେ ପ୍ରାଣୀ ରୌରବେ ପଡ଼ଇ ॥
ଯେ ଜୀବ ହିଂସନ୍ତି ସଂସାରେ । ତାହାଙ୍କୁ ପରେ ସେ ଲୋକରେ ॥
ରୌରବ ମୂର୍ତ୍ତି ଜୀବ ହୋଇ । କଠୋରେ ତାହାକୁ ହିଂସଇ ॥
ମହା ରୌରବ ଏହିମତେ । ଯେ ବା ଅତୁର ଯେ ବଧିତେ ॥
ଯହିଁରେ ଯେ ପାପୀ ପଡ଼ଇ । ରୌରବ ନରକ ଭୁଞ୍ଜଇ ।
ଯେ ନର ପଶୁ ପକ୍ଷୀମାନ । ପ୍ରାଣେ ବଧ କରି ସେ ଜନ ॥
ଭକ୍ଷନ୍ତି ବଳ ନେଇ ଦେହ । କୁମ୍ଭୀପାକରେ ସେ ପଡ଼ଇ ॥
ତପତ ତେଲରେ ତାହାର । ରନ୍ଧନ ହୁଅଇ ଶରୀର । ୪୨ ।
କାଳସୂତ୍ର ନରକ ନାମ । ତମ୍ବାର ଅୟୁତ ଯୋଜନ ॥
ତାମ୍ରମୟ ଯେ ଭୂମି ତାର । ଉପରେ ଥାଇ ସେ ଭାସ୍କର ॥
ଅଧୋଭାଗରେ ଅଗ୍ନି ଥାଇ । ଏମନ୍ତ ସ୍ଥଳକେ ପଡ଼ଇ ॥
ଯେ ନର ବ୍ରହ୍ମହତ୍ୟା କରେ । ସେ ତହିଁ ପଡ଼ଇ ନିର୍ଭରେ ॥
ତପତ ପୃଷ୍ଠ ଫୁଟଇ । ତହିଁ ସେ ହତଜ୍ଞାନ ହୋଇ ॥

କ୍ଷଣକେ ଉଠଇ ଶୁଣଇ । ବସଇ ବ୍ୟାକୁଳିତ ଧାମଇ ॥
କ୍ଷୁଧା ପିପାସା ପୀଡ଼ାମାନ । କ୍ଷଣକେ ହୋଏ ଅଚେତନ ॥
ପଶୁର ଦେହେଁ ଲୋମ ଯେତେ । ବର୍ଷ ତାବତ ସେହୁ ପଚେ ।୭୧।
ଉଗ୍ର ଯାତନା ଭୋଗ ପାଇ । ସେ ଦୁଃଣୀ ପଡ଼ିଥାଇ ତହିଁ ॥
ଯେ ନିଜ ଧର୍ମ ପଥ ଛାଡ଼ି । ବେଦବଚନ ନିନ୍ଦେ ହୁଡ଼ି ॥
ପାଷଣ୍ଡ ବୋଲି ତାକୁ କହି । ଅସିପତ୍ରରେ ସେ ପଡ଼ଇ ॥
ଲୌହ ମୁଦ୍ଗର ତା ଉପରେ । ପ୍ରହାର କରନ୍ତି ନିର୍ଭରେ ॥
ଯେ ରାଜ୍ୟେ ପ୍ରଜାଙ୍କୁ କଙ୍କରେ । ଅଦୋଷେ ଦଣ୍ଡ ଧଏ ନରେ ॥
ଅତ୍ୟନ୍ତ ପାପିଷ୍ଠ ଯେହୁ । କୁକ୍କୁର ମୁଖେ ସେ ପଡ଼ଇ ॥
ତହିଁ ପଡ଼ନ୍ତି ଯେ ନିର୍ଭରେ । ନାନା ଆୟୁଧର ପ୍ରହାରେ ॥
ଇକ୍ଷୁଦଣ୍ଡର ପ୍ରାୟେ କରି । ତାକୁ ପେଷନ୍ତି ଦଣ୍ଡଧାରୀ ॥
ପରମ କଷ୍ଟକୁ ସେ ପାଇ । କ୍ଷଣେକ୍ଷଣକେ ମୋହ ଯାଇ ॥
ଯେ ଏ ସଂସାରେ ନର ଦେଖି । ହିଂସାରେ ପ୍ରାଣୀକି ପୀଡ଼ଇ ॥
ଦ୍ରବ୍ୟାଦି ଦାନରେ ଯେଜନ । ସନ୍ତାପ ହୁଅଇଟି ମନ ॥
ଯେ ଆଶା ଦେଖାଇ ଭାଙ୍ଗଇ । ମାନୁଷ ତୁଲ୍ୟ ତାକୁ କହି ॥
ଯେ ନର୍କ କୃମିର ଭୋଜନ । ନରକମାନଙ୍କ ଅଧମ ॥
ଶତ ସହସ୍ର ଯେ ଯୋଜନ । ସେ କୁମ୍ଭୀପାକ ପରିମାଣ ॥
ତହିଁ ପଡ଼ଇ ସେହୁ ନର । ଉଗ୍ରଯାତନା ଯେ ତାହାର ॥
କୃମିଙ୍କି ଭକ୍ଷଇ ଯେପରେ । ତାକୁ ଭକ୍ଷନ୍ତି କୃମିମାନେ ॥
ଯାବତ କର୍ମ କ୍ଷୟ ନୋହେ । ତାବତ ହିଂସା ଦୂର ନୋହେ ॥
ସ୍ଥାପିତ ଦ୍ରବ୍ୟ ଯେ ହରଇ । ସ୍ୱଦେହ ପିଶାଚେ ପଡ଼ଇ ॥
ଅଗମ୍ୟା ନାରୀ ଯେ ହରଇ । ତପତ ସୂର୍ମିରେ ପଡ଼ଇ ॥
ନାରୀଟି ଅଗମ୍ୟ ପୁରୁଷେ । ଯେବେ ହରେ ରତି ଲାଳସେ ॥
ତପତ ଲୌହ ମୂର୍ତ୍ତିମାନ । ତାକୁ କରନ୍ତି ଆଲିଙ୍ଗନ ।୮୧।
ପୁରୁଷରୂପେ ନାରୀଠରେ । ପୁରୁଷ ନାରୀର ବେଭାରେ ॥
ଆଗମ ନିଗମ ବଚନେ । ନ ମାନେ ଯେ ପାଷଣ୍ଡ ମନେ ॥
ବଜ୍ରକଣ୍ଟକ ଶାଳ୍ମଳୀରେ । ଆବେଷ୍ଟଣ କରନ୍ତି ତାରେ ॥
ସଭାରେ ମିଥ୍ୟା ଯେ କହନ୍ତି । ଅବନା ନାରକେ ପଡ଼ନ୍ତି ॥

ଯେ ସ୍ତ୍ରୀ ଶିଶୁ ପଶୁ ମାରେ । ତାଙ୍କ ରୂପେ ସେ ସଞ୍ଚରେ ॥
ସେ ଯେ ବାଳକ ପଶୁମାନେ । ପରବଶେ ଯମର ସଦନେ ॥
ସ୍ୱୀୟ ରୂପକୁ ଅବଲ । ଶୋଣିତ ପିବନ୍ତି ତାହାରି ॥
ଯେ ନାରୀ ପୁରୁଷଙ୍କ ଚେତ । ଖାଇଣ ହୋଇ ମହାମତ୍ତ ॥
ନାଚନ୍ତି ଗାବନ୍ତି ହରଷେ । ଯେପନେ ବଷସ ପୁରୁଷେ ।୯୦।
ବିବିଧ ଜନ୍ତୁର ପ୍ରକାର । ଯେ ନର ଗ୍ରାମ ଅଧିକାର ॥
ବିଶ୍ୱାସୀ ପକ୍ଷୀକୁ ମାରଇ । ଯମସଦନେ ସେହୁ ଯାଇ ॥
ପାଶରେ ବାନ୍ଧି ତାର ଦେହ । କ୍ଷୁଧା ତୃଷାରେ ସେ ବିମୋହ ॥
କୁକୁର ନାମେ ଯମଗଣ । ମୁଖରେ କରନ୍ତି ଦଂଶନ ॥
ବିବିଧ କ୍ଲେଶକୁ ଲଭଇ । ଆପଣା କର୍ମ ଯେ ବହଇ ॥
ଉଗ୍ର ସ୍ୱଭାବେ ଯେ ବା ନରେ । ପ୍ରାଣୀର ଉଦ୍ବେଗକୁ କରେ ॥
ଦନ୍ଦଶୂକର ଯେ ନରକେ । ପଡ଼ନ୍ତି ଯାଇ ପରଲୋକେ ॥
ଯେ ଗର୍ଭ ଅନ୍ଧକଷ୍ଟ ସ୍ଥଳେ । ପ୍ରାଣୀଙ୍କ ଥୋଇ ଅବରୋଧେଲେ ॥
ଦ୍ୱାର ରୁନ୍ଧଇ ମୃତ୍ୟୁର । ଏମନ୍ତେ ଭୁଞ୍ଜେ ସେ ପାମର ॥
ଗର୍ତ୍ତେ ଯାମର୍କ୍ୟ ଥୁଅନ୍ତି । ସଧୂମ ଅଗ୍ନି ଦ୍ୱାରେ ଦିଅନ୍ତି ।୧୦୦
ପୂର୍ବେ ଯେ ଅସି ଯାଇ ନାହିଁ । ଅତିଥିରୂପରେ ଆସଇ ॥
ଗୃହର ପତି ତାକୁ ଯେବେ । ଅବଲୋକନ କ୍ରୋଧଭାବେ ॥
କୁବୁଦ୍ଧି ବାକ୍ୟକୁ କହଇ । ଅନ୍ତେ ସେ ନରକେ ପଡ଼ଇ ॥
କହଇ ଦାସ ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ।୧୦୪।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପଞ୍ଚମସ୍କନ୍ଧେ ନରକବର୍ଣ୍ଣନେ
ନାମ ଷଡ୍ବିଂଶୋଽଧ୍ୟାୟଃ ।



ସମାପ୍ତ

କଟକ ଦଣ୍ଡପେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା ମେସିନ୍‌ଯନ୍ତ୍ରେ
ମୁଦ୍ରିତ—୧୯୨୬

